ଜନ୍ମଶତକର ଶ୍ରଦ୍ଧାଞ୍ଜଳି

# ଗୋଦାବରୀଶ ଗ୍ରନ୍ଥାବଳୀ

ଉତ୍କଳ ସାହିତ୍ୟ ସମାଜ



ସଂକଳକ

## ମୁରାରି ମୋହନ ଜେନା

ସଂଗଠନ ସମ୍ପାଦକ, ଉତ୍କଳ ସାହିତ୍ୟ ସମାଜ

ଆନୁକୂଲ୍ୟ

ଲୋକ ସେବକ ମଣ୍ଡଳ, ଓଡ଼ିଶା ଶାଖା

ଗୋପବନ୍ଧୁ ଭବନ, କଟକ

ପ୍ରକାଶକ :

ଉତ୍କଳ ସାହିତ୍ୟ ସମାଜ

କଟକ

# ହେ ଦୀନବନ୍ଧୁ
# ହେ ଗୋପବନ୍ଧୁ
# HE DINABANDHU
# HE GOPABANDHU

ସଂକଳକ :

**ମୁରାରିମୋହନ ଜେନା**

Compiler:

**Murarimohan Jena**

ଲୋକସେବକ ମଣ୍ଡଳ,

ଓଡ଼ିଶା ଶାଖା ଆନୁକୂଲ୍ୟରେ

Under the auspices of the
Servants of the People Society,
Orissa Branch, Cuttack-1

ପ୍ରକାଶକ :

**ଉତ୍କଳ ସାହିତ୍ୟ ସମାଜ,** କଟକ

Publisher:

**Utkal Sahitya Samaj,**
**Cuttack-1**

ମୁଦ୍ରାକର :

**ଶ୍ରୀ ଉଦୟନାଥ ଷଡ଼ଙ୍ଗୀ**

ସତ୍ୟବାଦୀ ପ୍ରେସ

ଗୋପବନ୍ଧୁ ଭବନ, କଟକ ୭୫୩୦୦୧

**ମୂଲ୍ୟ-ପାଞ୍ଚ ଟଙ୍କା**

Price Rs. 5/-

# ମୁଖବନ୍ଧ

ଗୋପବନ୍ଧୁ ସମଗ୍ର ଉତ୍କଳର ପ୍ରାଣଭରା ଶ୍ରଦ୍ଧା ଓ ପ୍ରୀତିର ଶ୍ରେଷ୍ଠ ମୂର୍ତ୍ତିମନ୍ତ ପୁରୁଷ । ଜୀବନ ବିଶ୍ୱ ଦରବାରରେ ପୃଷ୍ଠା ପରେ ପୃଷ୍ଠା ଖୋଲି ଦେଖାଇଲା ଭଳି ଏକ ଗ୍ରନ୍ଥ-ଗୀତା ଭଳି ପବିତ୍ର, ଗୀତିକାବ୍ୟ ଭଳି କରୁଣାର୍ଦ୍ର ଓ ଝର୍ଣ୍ଣର ଝଂକୃତ । ଗୋପବନ୍ଧୁଙ୍କ ପ୍ରତିକୃତି ବା ମୂର୍ତ୍ତି ଶିକ୍ଷାଳୟରୁ ସାଂସ୍କୃତିକ ଅନୁଷ୍ଠାନ, ପ୍ରମୋଦ ରୁ ପ୍ରଧାନ ରାଜପଥ ସର୍ବତ୍ର ସଂରକ୍ଷିତ । କିନ୍ତୁ ତାଙ୍କର ପ୍ରକୃତ ଭାବମୂର୍ତ୍ତି ଗଢ଼ିଛନ୍ତି, ବା ଭାସ୍କର ନୁହନ୍ତି, ସାମ୍ବାଦିକ ବା ଜୀବନୀକାର ନୁହନ୍ତି, କବିମାନେ । କାରଣ , ସତ୍ୟକୁ ଉଜ୍ଜ୍ୱଳତମ ରୂପରେ ଫୁଟାଇପାରେ ଓ ସ୍ଥାୟୀ ଭାବରେ କାଳ ଉପରେ ପାତ କରିପାରେ ।

ତିରୋଧାନ ପରେ ସେହି ଭାବୋଦ୍‌ବେଳନା ବହୁ ରୂପ ରୂପାନ୍ତର ଗ୍ରହଣ କରିଛି— ତା, ମହାତ୍ମା, ଲୋକଶିକ୍ଷକ, ଜନସେବୀ, ମହର୍ଷି, ତ୍ୟାଗୀ, ବୈରାଗୀ, ଦେଶ-ସଂଗଠକ ଓ ସର୍ବମାନ୍ୟ ନେତାଭାବେ ସର୍ବତ୍ର ପ୍ରତିଷ୍ଠିତ ହୋଇଛନ୍ତି । 'ଉତ୍କଳମଣି' ତାଙ୍କର ଯୋଗ୍ୟ ଆଖ୍ୟା ନୁହେଁ, ସେ 'ଭାରତମଣି' 'ବିଶ୍ୱମଣି' ଯୋଗ୍ୟ ବୋଲି ବିବେଚନା କରାଯାଇଛି । ''ବାରଣ ବଢ଼େଇରେ ଦାୟ କି ଦାୟ'' ତାଙ୍କ ପକ୍ଷେ ଏକ ସନାତନ ସତ୍ୟ ଓ ଆଦର୍ଶ । ଆଚରଣ ମଧ୍ୟରେ ସେ ଟାଇଛନ୍ତି । ତାଙ୍କ ପ୍ରତି ଭାବୋଦ୍‌ବେଳନାର ଭଟ୍ଟା ନାହିଁ । କାରଣ ଆମ ଆନ୍ତର୍ଜାତୀୟତା, ଧର୍ମଭାବ, ଆଧ୍ୟାତ୍ମିକତା—ଯାହା କିଛି ଶ୍ରେଷ୍ଠ ସୁନ୍ଦର, ବୁ ଗୋପବନ୍ଧୁରେ ହିଁ ମୂର୍ତ୍ତ ହୋଇଅଛି ।

ଦ୍ର ସାହିତ୍ୟ ଏକାଡ଼େମୀ Indian literatureରେ ଗୋପବନ୍ଧୁ ଶତାବ୍ଦୀ ଡ଼ିଶାର ବହୁ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ଗୋପବନ୍ଧୁ ସଂଖ୍ୟା ଓ କାଶ କରିଛନ୍ତି । କିନ୍ତୁ କବିମାନେ ଗୋପବନ୍ଧୁଙ୍କର ଯେଉଁ ଭାବମୂର୍ତ୍ତି ଗଢ଼ି-ର୍ମାଙ୍ଗ ରୂପ ଦେଖିବାକୁ ମିଳି ନ ଥିଲା ।

ସାହିତ୍ୟ ସମାଜ''ର ଏହି ପ୍ରକାଶନ, ଉତ୍ତର ପୁରୁଷଙ୍କୁ ଗୋପବନ୍ଧୁଙ୍କ ନ ଦିଗ୍‌ଦର୍ଶନ ଦେଇପାରିବ ବୋଲି ଏହି ଅବସରରେ ଆଶା ପୋଷଣ

କଳନର ସଂକଳକ ଓ ମୁଖ୍ୟ ଉଦ୍ୟୋକ୍ତା ହେଉଛନ୍ତି ଉତ୍କଳ ସାହିତ୍ୟ ର ସମ୍ପାଦକ ଶ୍ରୀ ମୁରାରିମୋହନ ଜେନା । ତାଙ୍କରି ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ହିଁ ଗୋପବନ୍ଧୁଙ୍କ ସମ୍ପର୍କରେ ଏ କବିତା ସଂକଳନଟି ଆଜି ଆସିପାରିଛି । ଏ ଦୃଷ୍ଟିରୁ ଶ୍ରୀ ଜେନା ତାଙ୍କ ଉପରେ ନ୍ୟସ୍ତ ହୋଇଥିବା କାର୍ଯ୍ୟଟି ସମ୍ପାଦନ କରି ସାଧୁବାଦର ପାତ୍ର ହୋଇଛନ୍ତି । ଏହି ସଂକଳନ ନର ସମସ୍ତ ବ୍ୟୟ ବହନ କରି ଓଡ଼ିଶା ଶାଖା ଲୋକସେବକ ମଣ୍ଡଳର ଭାପତି ଡକ୍‌ଟର ରାଧାନାଥ ରଥ ଓ ସମ୍ପାଦକ ଶ୍ରୀଯୁକ୍ତ ଫକୀରଚରଣ ଦାସ ତୋଭାବେ ଆମ୍ଭମାନଙ୍କର କୃତଜ୍ଞତାର ପାତ୍ର ।

**ଡକ୍ଟର କୁଞ୍ଜବିହାରୀ ଦାଶ**
ସଭାପତି, ଉତ୍କଳ ସାହିତ୍ୟ ସମାଜ

# କାଣ୍ଠି ଠେଠ କାନ୍ଦୁଛି

ରବୀନ୍ଦ୍ରନାଥ ତାଙ୍କର ସାହାଜାହାନ କବିତାରେ ଲେଖିଥିଲେ—"ତୁମର ସୃଷ୍ଟିଠାରୁ ତୁମେ ଯେ ମହତ୍ ।" ଗୋପବନ୍ଧୁଙ୍କ କାବ୍ୟ କବିତା ଏପରି କି ଗଦ୍ୟ ସୃଷ୍ଟି କ୍ଷେତ୍ରରେ ଏହି ଚିନ୍ତା ଓ ଚିନ୍ତନ ଅକ୍ଷରେ ଅକ୍ଷରେ ସତ୍ୟ । ଅର୍ଥାତ୍ ଗୋପବନ୍ଧୁଙ୍କର କବି ପ୍ରାଣର ପ୍ରାଚୁର୍ଯ୍ୟ, କବିତାର ସ୍ରୋତ ଆକାରରେ ଝରିବାକୁ ବିଶେଷ ଅବକାଶ ଯଦିଓ ପାଇ ନ ଥିଲା, ତଥାପି ତାହା ବାରି ବିନ୍ଦୁ ପରି ଓଡ଼ିଶା ମାଟିର କୋଟି ଜନତାର କଲ୍ୟାଣ ପାଇଁ ଯେ ଝରି ପଡ଼ିଥିଲା, ଏଥିରେ ଆଦୌ ସନ୍ଦେହ ନାହିଁ ।

ଭାରତୀୟ ଜାତୀୟ ମୁକ୍ତିର ଦୁର୍ଗମ ପଥରେ ଗୋପବନ୍ଧୁଙ୍କର ଅଗ୍ରଣୀ ଭୂମିକା ଓ ଓଡ଼ିଶାର ଜାତୀୟ ଜୀବନରେ ତାଙ୍କର ସେବା, ଦେଶପ୍ରୀତି, ସାହିତ୍ୟ, ସାମ୍ବାଦିକତା, ସଂସ୍କୃତିରେ ତାଙ୍କର ପ୍ରଗତିଶୀଳ ଓ ତ୍ୟାଗସାଧନା ପୂତ ଐତିହ୍ୟ ଅନନ୍ୟ ସାଧାରଣ ଓ ଅବିସ୍ମରଣୀୟ । ୧୯୦୪ ମସିହାରେ ମଧୁବାବୁ ସ୍ୱଦେଶୀ ବ୍ୟବହାର ପାଇଁ ପୁରୀ ଜଗନ୍ନାଥ ବଲ୍ଲଭର ବିରାଟ ସଭାରେ ଦସ୍ତଖତ ସଂଗ୍ରହ ବେଳେ କେବଳ ଦୁଇ ଜଣ ଛାତ୍ର ଶପଥ ପତ୍ରରେ ଦସ୍ତଖତ କରିଥିଲେ । ତେଣୁ ଏହି ଦୃଷ୍ଟିରୁ ଭାରତର ଦେଶ ପ୍ରେମିକ ରାଜନୀତିର ମାନଦଣ୍ଡକୁ ମାପିଲେ ଗୋପବନ୍ଧୁ ଓ ମଧୁବାବୁ ଖୁବ୍ ଅଗ୍ରଗାମୀ ଥିଲେ । ୧୯୦୧ ମସିହାର ଆପଣା ଗ୍ରାମ ସୁଆଣ୍ଡୋଠାରେ ପ୍ରଭାତ କାଳରେ ଗୋପବନ୍ଧୁ ଯୁବକ ହରିହର ଓ କିଶୋର ନୀଳକଣ୍ଠ ଓ ଅନନ୍ତ (ପରବର୍ତ୍ତୀ କାଳରେ ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ନୀଳକଣ୍ଠ ଦାସ ଓ ପ୍ରଚାରକ ଅନନ୍ତ ମିଶ୍ର)ଙ୍କୁ ଦେଶପ୍ରେମିକ ଦୀକ୍ଷାରେ ଶପଥ ପାଠ ପଢ଼ାଇଥିଲେ ଓ ସେତେବେଳକୁ ମଧ୍ୟ ଗୋପବନ୍ଧୁ ମହାତ୍ମା ଗାନ୍ଧିଙ୍କ୍ର ପୂର୍ବରୁ ଆପଣାର ସହଜ ଜ୍ଞାନକୁ ବିଲାତି ପୁଞ୍ଜିପତି ଶୋଷଣରୁ ଦେଶକୁ ରକ୍ଷା କରିବା ପାଇଁ ସ୍ୱଦେଶୀର ଭାବନା ଗ୍ରହଣ କରି ସାରିଥିଲେ ।

ଏହି କାଳର ପୂର୍ବ ଅର୍ଦ୍ଧ ଶତାବ୍ଦୀରେ ଓଡ଼ିଶାରେ ପାଇକ ବିଦ୍ରୋହ । ବୀର ସୁରେନ୍ଦ୍ର ସାଏଙ୍କର ସଂଗ୍ରାମ । ଘୁମୁସରରେ ଚକ୍ର ବିଶୋଇଙ୍କର ମୁକ୍ତି ଆନ୍ଦୋଳନ ଇତ୍ୟାଦି ଅତୀତ ସ୍ମୃତିରେ ବିଲୀନ ହୋଇଯାଇଥାଏ । ଅବିସ୍ମରଣୀୟ ଚନ୍ଦନ ହଜୁରୀ ଓ ତାଙ୍କରି ମାଧ୍ୟମରେ ଭାରତର ପ୍ରଥମ ସ୍ୱାଧୀନତା ସମରର ହିନ୍ଦୁ ମୁସଲମାନ ମିଳନ ପ୍ରଚେଷ୍ଟା (୧୮୫୭) ବ୍ୟର୍ଥ ହୋଇଯାଇଥାଏ । ଓଡ଼ିଶାରେ ସେତେବେଳେ ଚାଲିଥାଏ ବଙ୍ଗଳା ଲାଟ ସାହେବଙ୍କ ତଳେ ବଙ୍ଗଳାର ଉଚ୍ଚ ମଧ୍ୟବିତ୍ତ ଓ ସମ୍ଭ୍ରାନ୍ତ ରାଜନ୍ୟବର୍ଗଙ୍କର ଅଖଣ୍ଡ ପ୍ରତିପତ୍ତି ଓ ରାଜୁତି । ଓଡ଼ିଆ ଭାଷା, ସଂସ୍କୃତି, ଭୂଗୋଳ, ଇତିହାସ ସବୁ ଖଣ୍ଡିତ ବିପର୍ଯ୍ୟ ଯାହାକି ଏହି ପରିସ୍ଥିତିକୁ ଲକ୍ଷ୍ୟ କରି ଓ ଆକ୍ଷେପ କରି ଦରବାରରେ କବିବର ରାଧାନାଥଙ୍କ ପରି ଉଚ୍ଚ ସରକାରୀ ଚାକିରିଆ ମଧ୍ୟ ବିକଳରେ କାନ୍ଦିଥିଲେ— "କି ଥିଲା ଏ ରାଜ୍ୟ, କି ହୋଇଛି ଆଜ !"

ଓଡ଼ିଆ ଜୀବନର ସାହିତ୍ୟ, ଶିକ୍ଷା, ସାମ୍ବାଦିକତା, ସେବା, ଦେଶପ୍ରେମ, ତ୍ୟାଗ, ବସୁଧାର କୁଟୁମ୍ବିତା, ରାଜନୀତି, ମୁକ୍ତି ସଂଗ୍ରାମ ପ୍ରତ୍ୟେକ ଦିଗରେ ଗୋପବନ୍ଧୁ ଓ ତାଙ୍କ

ଦ୍ୱାରା ଅନୁପ୍ରାଣିତ ସତ୍ୟବାଦୀ ଗୋଷ୍ଠୀ ଯେ ଓଡ଼ିଶାର ନବ ଜାଗରଣର ମୂଳ ଉତ୍ସ ଥିଲେ, ଏ କଥାର ପ୍ରତ୍ୟେକ୍ଷ ପ୍ରମାଣ ହିଁ ସତ୍ୟବାଦୀ ମାସିକ ପତ୍ର, ସମାଜ ପତ୍ରିକା, ସତ୍ୟବାଦୀ ବନବିଦ୍ୟାଳୟ, ଅସହଯୋଗ ଆନ୍ଦୋଳନର ଯଜ୍ଞକୁଣ୍ଡରେ ସେହି ବିଦ୍ୟାଳୟର ଶିକ୍ଷକ ଛାତ୍ର ସମେତ ଅଧିକାଂଶଙ୍କର ଆତ୍ମାହୂତି, ୟଙ୍ଗ୍ ଉତ୍କଳ ଆସୋସିଏସନ, ଦେଶ-ମିଶ୍ରଣ ଆନ୍ଦୋଳନ ଇତ୍ୟାଦିର ବିଶ୍ରୁତ ଘଟଣା । ମନେ ରଖିବାକୁ ହେବ ଯେ ଏହି ପ୍ରତ୍ୟେକ ଘଟଣା କଠୋର ଦ୍ୱନ୍ଦ୍ୱ ଓ ସଂଘର୍ଷ ମଧ୍ୟରେ ଗତି କରିଛି ଓ ଏହି ଦ୍ୱନ୍ଦ୍ୱ ଭିତରେ ପ୍ରଗତି ଓ ପ୍ରତିକ୍ରିୟାର ଲଢ଼େଇରେ ଗୋପବନ୍ଧୁ ସବୁବେଳେ ରକ୍ଷଣଶୀଳତା ବିରୋଧୀ ପ୍ରଗତିର ଭୂମିକାରେ ଭାଗ ନେଇଛନ୍ତି । ଆଜି ଅର୍ଥନୈତିକ ଶ୍ରେଣୀ ସଂଘର୍ଷ, ଅଛୁଆ ଜାତି ସହିତ ଭୂମି ମାଲିକଙ୍କର ଜାତି ସଂଘର୍ଷ ରୂପ ନେଉଥିଲା ବେଳେ ସେତେବେଳର ସତ୍ୟବାଦୀ ବନବିଦ୍ୟାଳୟରେ ସବୁ ଜାତିଙ୍କର ପଂକ୍ତିଭୋଜନ, କନିକାରେ ସାମନ୍ତବାଦୀ ଶୋଷଣ ବିରୁଦ୍ଧରେ ପ୍ରଜା ଆନ୍ଦୋଳନରେ ଗୋପବନ୍ଧୁଙ୍କର ଅଗ୍ରଗାମୀ ଭୂମିକା, ଏବେ ବି ସ୍ମରଣ କରାଇ ଦିଏ ।

''ଥାଅ ଗୋ ସାଳନ୍ଦୀ ଦୁଃଖିନୀ କନିକା
ବଞ୍ଚିଥିଲେ ହେବ ଆଉ ଥରେ ଦେଖା
ଏଠା ମହାଶୟ ବଡ଼ ପରଚଣ୍ଡ
ତାଙ୍କ ଯୋଗୁଁ ମୋର ଆଦ୍ୟ କାନ୍ଥ ଦଣ୍ଡ ।

\+ \+ \+

ରଜା କରେ ଯେବେ ଘୋର ଅତ୍ୟାଚାର
ପ୍ରଭୁଙ୍କ ଛାମୁରେ ନୋହେ କି ବିଚାର ?
ରାମ ଯୁଧିଷ୍ଠିର ଯା'ର ନରପତି
ସେ ପ୍ରଜା କୁଳରେ ଆଜି ଏ ଦୁର୍ଗତି !'' (ବନ୍ଦୀର ଆତ୍ମକଥା)

ପୁଣି କହି ରଖେ, ଗୋପବନ୍ଧୁଙ୍କର ପ୍ରଗତିଶୀଳ ଓ ଶୋଷଣ ବିରୋଧୀ ନୀତିର ଗୋଟିଏ ଉଦାହରଣ ହେଉଛି ୧୯୨୫ ମସିହାରେ ପୁରୀ ସହରରେ ମହାତ୍ମା ଗାନ୍ଧୀଙ୍କର ସଭାରେ ଯୋଗ ନ ଦେବାର ତାଙ୍କର ନୀତି ନିଷ୍ଠ କଟାକ୍ଷ । ଏ ସମ୍ପର୍କରେ ମର୍ମସ୍ପର୍ଶୀ ବିବରଣୀ ପଣ୍ଡିତ ନୀଳକଣ୍ଠଙ୍କର ଆତ୍ମଜୀବନୀରେ ଓ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ 'କୁମ୍ଭାର ଚକ'ରେ ରହିଛି । କବିଚନ୍ଦ୍ର ତାଙ୍କ କୁମ୍ଭାରଚକରେ ଲେଖିଛନ୍ତି— + +

''ତହିଁ ପରଦିନ ଗାନ୍ଧିଜୀ ପୁରୀ ଆସିଲେ । ଚାରିଟା ବେଳେ ସିଂହଦ୍ୱାରରେ ସଭା ଡାକରା । ଗାନ୍ଧିଜୀ ଉପସ୍ଥିତ । ଦାସେଆପଣେ କିନ୍ତୁ ଅନୁପସ୍ଥିତ ସେ ସଭାରେ । ଚାରିଟା ବାଜିଗଲାଣି । ଅଣ୍ଟାରୁ ଗାନ୍ଧିଜୀ ଘଡ଼ି କାଢ଼ି ଦେଖି ଦାସେଆପଣେଙ୍କ ଆଗମନ ପ୍ରତୀକ୍ଷା କଲେ, ଅନେକ ବେଳ ଯାଏ ।

ମୁଁ ଏ ସବୁର କାରଣ ବାରି ନ ପାରି ମରିଚିକୋଟକୁ ବେଗେ ଗଲି । ଯାଇ ଦେଖିଲି ଦାସେଆପଣେ ଖଣ୍ଡିଏ 'ୟଙ୍ଗ୍ ଇଣ୍ଡିଆ' କାଗଜ ଧରିଛନ୍ତି । ମୁଁ ତାଙ୍କୁ ସଭାକୁ ଯିବାରେ ଉଛୁର ହେବାର କାରଣ ପଚାରନ୍ତେ, ରାଗି ଉଠି କହିଲେ—

"ଯୋଉ ଲୋକ ରାଜରାଜୁଡ଼ାଙ୍କ ପଟ ହୋଇ ପ୍ରଶଂସା ଗାଏ, ଗୋପବନ୍ଧୁ ଦାସ ତା' ପାଖକୁ ଯାଏ ନାହିଁ । ଏତିକି କହି ମୋତେ କାଗଜଟି ବଢ଼ାଇ ଦେଲେ । ଦେଖିଲି ସେ ପତ୍ରିକାରେ ମହୀଶୂର ରାଜାଙ୍କୁ ଟିକିଏ ପ୍ରଶଂସା କରାଯାଇଛି । + +

ନୀଳକଣ୍ଠ ଦାସଙ୍କର ଜୀବନୀରୁ ପ୍ରକାଶ ଗୋପବନ୍ଧୁ ଚମ୍ପାପୁରର ଗୋବିନ୍ଦ ମିଶ୍ରଙ୍କୁ ବିରକ୍ତ ହୋଇ କହିଥିଲେ—

—"ଆରେ ଯାଃ, ଯେଉଁ ଗାନ୍ଧି 'ୟଙ୍ଗ୍ ଇଣ୍ଡିଆ' କାଗଜରେ ମହୀଶୂର ରାଜାଙ୍କୁ ପ୍ରଶଂସା କରି ସାର୍ଟିଫିକେଟ ଦିଏ, ସେ ଗାନ୍ଧି ସତ୍ୟବାଦୀ ଆସେ ନାହିଁ ।" ଯାହାହେଉ ମହାତ୍ମା ଗାନ୍ଧି ସେଥର ଗୋପବନ୍ଧୁଙ୍କ ପାଖରେ ମହୀଶୂର ରାଜାଙ୍କୁ ସାର୍ଟିଫିକେଟ ସଂକ୍ରାନ୍ତ ଘଟଣାରେ ଅବଶୋଷ କରିଥିଲେ ।

ଇଏ ଥିଲେ ସେଇ ଗୋପବନ୍ଧୁ । ଭାରତର କମ୍ ରାଜନୈତିକ ନେତା ମହାତ୍ମା ଗାନ୍ଧିଙ୍କର ପ୍ରବଳ ପ୍ରତିଷ୍ଠା କାଳରେ ତାଙ୍କ ପ୍ରତି ଏପରି ନୀତି ନିଷ୍ଠ କଟାକ୍ଷ କରିଛନ୍ତି । ସେ କାଳରେ ରାଜା ପକ୍ଷପାତିତା ଓ ସାମନ୍ତବାଦୀ ବିରୋଧୀତାର ଏପରି ଦୃଷ୍ଟାନ୍ତ ବିରଳ ।

ବିଶେଷତଃ ଯେତେବେଳେ ଏହି ଘଟଣା ପୂର୍ବରୁ ଗୋପବନ୍ଧୁ ଉତ୍କଳ ଦେଶ ମିଶ୍ରଣ ଆନ୍ଦୋଳନରେ ଓଡ଼ିଶାର ବହୁ ଗଡ଼ଜାତ ରାଜା ଓ ଜମିଦାରଙ୍କ ସହିତ ସମଯୋଦ୍ଧା ଭାବରେ ଏକ ପୀଠରେ, ଏକାଠି ହେଉଥିଲେ, ସେତେବେଳେ ଏଭଳି ବଳିଷ୍ଠତା ଅଭାବନୀୟ ।

ଦେଶ ବିଦେଶର କୌଣସି ପ୍ରଗତିଶୀଳ ବିପ୍ଳବୀ ଚିନ୍ତାଧାରାକୁ ଗୋପବନ୍ଧୁ କେବେ ଓଡ଼ିଶାରେ ରୋକି ନାହାନ୍ତି । ତାଙ୍କର ସମସ୍ତ ଗଦ୍ୟ ପ୍ରବନ୍ଧ ଆଲୋଚନା ଇତ୍ୟାଦି ପ୍ରକାଶିତ ହେଲେ ଏକଥା ସାଧାରଣ ପାଠକ ଅଭିହିତ ହେବେ ଯେ, କିପରି ଗୋପବନ୍ଧୁ ତାତ୍କାଳିକ ପ୍ରଗତିଶୀଳ ଚିନ୍ତାଧାରା ପ୍ରତି ସଚେତନ ସହାନୁଭୂତି ପ୍ରଦର୍ଶନ କରିଥିଲେ । ଗୋପବନ୍ଧୁଙ୍କର କାଳରେ ସବୁଠାରୁ ବୈପ୍ଳବିକ ଚିନ୍ତାର ନାୟକ ଥିଲେ ଲେନିନ । ତାଙ୍କର ମୃତ୍ୟୁରେ ଗୋପବନ୍ଧୁ ସାପ୍ତାହିକ 'ସମାଜ'ରେ ଯେଉଁ ସମ୍ପାଦକୀୟ ଟିପ୍‌ପଣୀ ଲେଖିଥିଲେ, ତାହା ଏ ପ୍ରସଙ୍ଗରେ ସର୍ବାଗ୍ରେ ସ୍ମରଣୀୟ । ଏହାଛଡ଼ା ଲେନିନ୍‌ଙ୍କର ଚିନ୍ତାର ଉଦ୍‌ଘୋଷଣା ବିଷୟରେ ଗୋପବନ୍ଧୁ ୨-୧-୨୬ର ସାପ୍ତାହିକ 'ସମାଜ'ରେ ଭାରତର କମ୍ୟୁନିଷ୍ଟ ଚିନ୍ତାଧାରା ବିଷୟରେ ଲେଖିଥିଲେ—

+ + "ଭୋଗିବା ଲୋକଙ୍କ ଦେହରେ ଧୂଳି ପଡ଼ୁ ନାହିଁ, ତାଙ୍କ ପାଦ ତଳେ ଲାଗୁ ନାହିଁ । ଷଡ଼ରସ, ଦିବ୍ୟ ବ୍ୟଞ୍ଜନ ତାଙ୍କୁ ରୁଚୁ ନାହିଁ । ସେ କୋଟିପତି, ସେ ଲକ୍ଷପତି, ସେ ରାଜା, ସେ ଜମିଦାର । ମାତ୍ର ଯେ ବିଗ୍ରହ ଉତ୍ପନ୍ନ କରୁଛି, ସେ ମୂଲିଆ, ସେ ପ୍ରଜା । ଭିନ୍ନ ଶ୍ରେଣୀର ଲୋକଙ୍କ ମଧ୍ୟରେ ଅବସ୍ଥାର ଏହି ବିଷମ ବିଭେଦ ଘୁଞ୍ଚାଇ ସମସ୍ତଙ୍କୁ ସମାନ ସୁଖଶାନ୍ତି ଅଧିକାର ଦେବା କମ୍ୟୁନିଷ୍ଟ ବା କୋଠବାଦୀମାନଙ୍କର ଯେବେ ନୀତି ହୁଏ, ତାହା ଗରିବକୁ ନିଶ୍ଚୟ ଭଲ ଲାଗିବ । ପ୍ରଜା ଓ ମଜୁରିଆମାନେ ଏ କଥା ଶୁଣି ମୁଣ୍ଡିଆ ମାରିବେ । ମାତ୍ର ଯେଉଁମାନେ ଦେଶର ସମ୍ପଦ ଧରି ବସିଛନ୍ତି, ସବୁ ଅଧିକାରକୁ ନିଜ ହାତରେ ରଖିଛନ୍ତି, ତଥାପି ତୃଷ୍ଣା ଯେଉଁମାନଙ୍କର ମେଣ୍ଟୁ ନାହିଁ, ସନ୍ନିପାତ ରୋଗୀ ପରି ଅଧିକ ପାଇବାକୁ ତୃଷ୍ଣା ଦିନକୁ ଦିନ ବଢ଼ୁଛି, ସେମାନେ ଏ କୋଠବାଦୀ ନୀତିରେ ଆପଣା ପ୍ରମାଦ ଯେ ଗଣିବେ, ବିଚିତ୍ର କଣ ?

ବର୍ତ୍ତମାନ ଯୁଗରେ  ଯେ କୌଣସି ଦେଶର ସରକାର ଏ ନୀତିର ବିରୋଧୀ ହେବେ ହିଁ ହେବେ । ଏ ଅବସ୍ଥାରେ କାନପୁରଠାରେ କୋଠବାଦୀଙ୍କ ସମ୍ମିଳନୀରେ ଦେଶର ମୁଖିଆ ଲୋକେ ଯେ ଯୋଗ ଦେଇ ନ ଥିଲେ, ଏଥିରେ ଆଶ୍ଚର୍ଯ୍ୟ କିଛି ନାହିଁ । ଏ ଦଳର କାର୍ଯ୍ୟ ଭାରତ ପରି ଦେଶରେ ଅଗ୍ରସର ହେବା ସହଜ ନୁହେଁ । ଏ ଦଳକୁ ବହୁ ନିର୍ଯ୍ୟାତନା ଭୋଗିବାକୁ ହେବ । ମାତ୍ର ଏମାନଙ୍କର ନୀତି ଓ କାର୍ଯ୍ୟ ଯଦି ସମୟର ପ୍ରୟୋଜନ ଲାଗି ବିଧାତାଙ୍କର ଇଙ୍ଗିତରେ ଆସିଥାଏ, ତେବେ ଏଥିର ପ୍ରଭାବରେ ଦିନେ ସମାଜ ଶାସନର ବ୍ୟବସ୍ଥା ନ ବଦଳିବ ବୋଲି କିଏ କହିପାରେ ?" (ସମାଜ ୨।୧।୨୬)

ଏହାପରେ ଗୋପବନ୍ଧୁଙ୍କର ଉଦାର ପ୍ରଗତିଶୀଳତା ସମ୍ପର୍କରେ କି ସାର୍ଟିଫିକେଟ ଦରକାର ? ସର୍ବୋପରି ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କ ଓଡ଼ିଆ ଜାତୀୟତା ଓ ଦେଶପ୍ରାଣତାରେ ମଧୁବାବୁଙ୍କର ଯେପରି ଏକ ଅବିନଶ୍ୱର ଐତିହ୍ୟ ଓ ଆମର ପ୍ରଗତିଶୀଳ ଗର୍ବିତ ପରିଚୟ ରହିଛି, ସେହିପରି ଓଡ଼ିଶା ଓ ଭାରତର ଜାତୀୟ ଆନ୍ଦୋଳନ, ଅଭ୍ୟୁତ୍‌ଥାନର ଜୀବନଧାରାରେ ଅର୍ଥାତ୍ ସାହିତ୍ୟ, ଦେଶପ୍ରେମ, ଆତ୍ମୋତ୍ସର୍ଗ, ବନ୍ଧୁବତ୍ସଳତା, ସଂସ୍କୃତି ଓ ସ୍ୱଦେଶୀ, ସବୁ ଦିଗରେ ଗୋପବନ୍ଧୁଙ୍କର ଏକ ଅବିନଶ୍ୱର ଐତିହ୍ୟ ରହିଛି । ଏହା ଛଡ଼ା ପୁଣି କୁହାଯାଇପାରେ ଯେ, ଗୋପବନ୍ଧୁଙ୍କ ମହାପ୍ରୟାଣଠାରୁ ଆଜିଯାଏ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି ତାଙ୍କ ଐତିହ୍ୟର ମାନବିକତା ହିଁ ଜାତିର ସଞ୍ଚାଳି ଓ ସମ୍ପଦ ହୋଇ ରହିଛି । ଏହାକୁ ଶ୍ରଦ୍ଧାର ସହିତ, କୃତଜ୍ଞତାର ସହିତ ସ୍ମରଣ କରିବା ପ୍ରତ୍ୟେକ ଦେଶବାସୀଙ୍କର କର୍ତ୍ତବ୍ୟ ନୁହେଁ କି ?

ତେଣୁ ଏହି ଦୃଷ୍ଟିରୁ ଗୋପବନ୍ଧୁଙ୍କ ଜନ୍ମଶତକ ଉପଲକ୍ଷେ ଉତ୍କଳ ସାହିତ୍ୟ ସମାଜର "ହେ ଦୀନବନ୍ଧୁ, ହେ ଗୋପବନ୍ଧୁ" ସ୍ତୁତି ଅର୍ଘ୍ୟ, ଓଡ଼ିଶାର ବହୁ ପ୍ରବୀଣ ଓ ନବୀନ କବିଙ୍କର ପୂର୍ବର ଅନ୍ୟତ୍ର ଓ ବିଶେଷ କରି ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା 'ସମାଜ'ରେ ପ୍ରକାଶିତ ଓ ଏବର ଅପ୍ରକାଶିତ କେତୋଟି କବିତାର ସଙ୍କଳନ ମାତ୍ର । ତେଣୁ ଉତ୍କଳ ସାହିତ୍ୟ ସମାଜ ଭଳି ଏକ ପ୍ରତିଷ୍ଠିତ ପ୍ରଖ୍ୟାତ ସାହିତ୍ୟ ଅନୁଷ୍ଠାନର ଏଭଳି ସଙ୍କଳନ ଉଦ୍ୟମ ଯେ ପ୍ରକୃତରେ ଏ ଜାତିର ପ୍ରାଣ ଶକ୍ତିର ଏକ ଶୁଭ ସଙ୍କେତ, ଏତିକି ବିଚାରିବାକୁ ମୁଁ ମୋ ଦେଶର ପାଠକପାଠିକାମାନଙ୍କୁ ଏଇ ଅବସରରେ ସୂଚନା ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ସ୍ମରଣରେ ଆଣୁଛି ।

ପରିଶେଷରେ ଏତିକି କହି ରଖେ, ମୋ ଦେଶର ଯେଉଁ ବରେଣ୍ୟ କବିମାନଙ୍କର ଲେଖାରେ ଏ ସଂକଳନଟି ସମୃଦ୍ଧ, ସେମାନଙ୍କଠାରେ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ଓ ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟକାରୀ ସମିତି ମୋ ଉପରେ ଏ ସଙ୍କଳନର ଦାୟିତ୍ୱ ନ୍ୟସ୍ତ କରିଥିବାରୁ ସେମାନଙ୍କୁ ମଧ୍ୟ ସାଧୁବାଦ ଜଣାଉଛି ଓ ଓଡ଼ିଶାର ସ୍ୱନାମଧନ୍ୟ ଶିଳ୍ପୀ ଶ୍ରୀ ଉଦୟନାରାୟଣ ଜେନା ଏ ସଂକଳନର ପ୍ରଚ୍ଛଦପଟ ଅଙ୍କନ କରିଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛି ।

**ମୁରାରିମୋହନ ଜେନା**

ସଂକଳକ

## ॥ ଯେଉଁମାନଙ୍କ ଲେଖାରେ ଏ ସଂକଳନ ସମୃଦ୍ଧ ॥

## —ସେଇ ବରେଣ୍ୟ କବିମାନେ ହେଲେ—



---

# କବି ଗୋପବନ୍ଧୁଙ୍କ ଅମର ଲେଖନୀରୁ

କାପୁରୁଷ ପରି ମରିବା ଜଗତେ
ନୁହେଁ ନର ପଉରୁଷ
ପର ହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ ।।

+ + + +

ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।।

+ + + +

ମହୂର୍ତ୍ତେ ମାତର ଉଜ୍ଜ୍ୱଳି ପ୍ରଖର
ଶିଖା ଟେକି ହୁତାଶନ
ଜଳି ଯେବେ କରେ ଆଲୋକ ଉତ୍ତାପ
ଚଉଦିଗେ ବିତରଣ ।।

ଲିଭୁ ସେ କ୍ଷଣକେ ତଥାପି ଏ ଲୋକେ
ରହେ ତା' ଆଦର ଯଶ
କି ଲୋଡ଼ା ତହିଁରେ ରହେ ଯେ ମହୀରେ
କୁହୁଳି ସହସ୍ର ବର୍ଷ ।।

# ଉତ୍କଳ ପ୍ରୟାଣ

ଡକ୍ଟର ମାୟାଧର ମାନସିଂହ

( ୧ )

ମହାବୀର ମହାପ୍ରୟାଣ ରଚିଲା ଆଜି
ତା' ମହା ଜାତିର ଗର୍ବ ଗଲା ଯେ ଭାଜି
ଅନୀକିନୀ ତା'ର ସ୍ତମ୍ଭିତେ ଅଛି ରହି
ପ୍ରତି କରେ କରେ ପତାକା ଯାଇଛି ନଇଁ
ପ୍ରତି ହିୟା ଘେରି ଘୋଟିଛି ଅନ୍ଧକାର
ଅଧରେ କେବଳ ତା'ରି ନାମ ଉଚ୍ଚାର
ଘରେ ଘରେ ଉଠେ କ୍ରନ୍ଦନ ଢୋଲ ବାଜି
ବିଗତ ଓଡ଼ିଆ ଜାତି ମଥାମଣି
ଭୂତଳେ ଖସିଗଲା ଆଜି ।।

( ୨ )

ନଗରେ ନଗରେ ନାଗରିକ ଆଜି
ନୟନେ ଅଶ୍ରୁ ଭରି
ଆସ ହେ ସକଳେ ରାଜପଥ ପରେ
ଚରଣ ନଗ୍ନ କରି
ମଥାନତ କରି ସମ୍ମାନ କର ସ୍ୱର୍ଗତ ମହାଜନେ,
ତୁମ ମେଳେ କହ ଅଛି କିଏ ଆଉ
ତାହା ପରି ଆଉ ଜଣେ ?
ରାଜା ଆସ, ଆସ ଧନିକ ବଣିକ
ସୁଭଗ ସୌଦାଗରେ
ଆସ ଋତ୍ୱିକ କୃଷକ କ୍ଷତ୍ରୀ
ଶବ ସାଥେ ତା'ର ଚଳ
ବ୍ରାହ୍ମଣ ଗାଅ ମରଣ ମନ୍ତ୍ର
ଜନତା ଧର ହେ ପାଳି
ଜନପଦବାସୀ ଖୋଳ କରତାଳେ
ଗମ୍ଭୀରେ ଦିଅ ତାଳି

( ୩ )

କୁଳବଧୂ ସବୁ ଠୁଳ ହୁଅ ଆସି
ଗବାକ୍ଷ ପୁଡ଼ା ଧରି
ତା'ର ପ୍ରାଣପ୍ରିୟ ମାଟି ପରେ ତବ
ଅଶ୍ରୁ ପଡ଼େ ହେ ଝରି
ଆସ ସନାତନୀ ଆସ ଖ୍ରୀଷ୍ଟାନ
ଆସ ହେ ମୁସଲମାନ
ଜାତିର ରଜାକୁ କ୍ଷୁଦ୍ରତା ଭୁଲି
କର ଥରେ ସମ୍ମାନ
ଧର୍ମ ଭୁଲି ସେ ଦରିଦ୍ର ମୁଖେ
ଅନ୍ନ ଦେଇଛି ଆଣି
ସକଳ ଦୁଃଖକୁ ନିଜ ଦୁଃଖ କରି
ଚକ୍ଷୁ ଦେଇଛି ପାଣି
ସେ ଥିଲା କୋଟିଏ ଦରିଦ୍ର ମେଳେ
ଦରିଦ୍ର ନାରାୟଣ
ତାହାଠାରୁ ବଳି ଅଛି କିଏ କହ ?
ତୁମର ପୂଜ୍ୟ ଜନ ?
ଶବ ପଛେ ତା'ର କୋଟି ମସ୍ତକ
ନୁଆଇଁ ଓଡ଼ିଆ ଜାତି
ସମ୍ମାନ କର ତା'ରେ ଯେ କରିଲା
ପୁଣ୍ୟ ତୋହର ମାଟି
ବାଜୁ ଖୋଳତାଳ ବରବଧୂ ସବୁ
ତେଜ ହେ ଅଶ୍ରୁ ନୀର
ମରଣ ଜାଣୁ ହେ, କେଡ଼େ ପ୍ରିୟ ଥିଲେ
ଆମର କର୍ମ ବୀର ।

( ୩ )

ଠିଆ ରହ ଏବେ ନିଖିଳ ଓଡ଼ିଆ ଜାତି
ସେନାପତି ତୋର ଚାଲିଗଲା ପଥ
ଶୂନ୍ୟ କରି ଏ ମାଟି
ମରଣେ ପଥର କି ମନ୍ତ୍ର ଗାଇ
ଘେନିଗଲା ପ୍ରିୟଜନ
କିମ୍ପାଇଁ ନେଲା ସେ ? ନିଷ୍ଠୁରେ ତାକୁ
ପଥର ଲକ୍ଷ ଜନ

( ୪ )

ଜଣକର ନୁହ, ଦେଢ଼କୋଟି ଲୋକ
ହୃଦୟ ଜ୍ୟୋତ୍ସ୍ନା ତାରେ–
ଘେନିଗଲ ଏବେ ନିଖିଳ ଜାତିରେ
ଭସାଇ ନିର୍ବିଘ୍ନରେ ।
ଦେଢ଼ କୋଟି ଲୋକ ନୟନେ ମରଣ
ତିକ୍ତ ବିଳାପ ଗ୍ରହିଁ
ଅନୁତାପ କରୁ 'ନିର୍ଦ୍ଦୟତା'ର
ଚପଳ ବୁଦ୍ଧି ପାଇଁ ।
ଯଦିରେ ଓଡ଼ିଆ ପ୍ରିୟଜନ ପାଇଁ
ବିଳାପ କରିବା ଜାଣେ
ଅତି ପ୍ରିୟଜନ ବିରହରେ ଆଜି
ଫାଟୁ ତୋ ରୁଦ୍ଧ ପ୍ରାଣ ।
କେଦାରେ କୃଷକ ଠିଆହୁଅ ଶୁଣ
କ୍ରନ୍ଦନ ଗଗନରେ,
କୃଷକର ସଖା ଗ୍ଲି ଯେ ଗଲଣି
ହାହାକାର ଘରେ ଘରେ ।
ବ୍ରାହ୍ମଣ ଆଦି ତେଜି ଆସ ତବ
ଦେଉଳ ଅନ୍ଧକାର
ଦେବତା ଯେ ଏଇ ଗ୍ଲିଗଲ ପଥେ
ଅର୍ଚ୍ଚନା କର କା'ର
ଯିଏ ଯହିଁ ଅଛ ପଥେ ଠିଆ ହୁଅ
ନିଖିଳ ଓଡ଼ିଆ ଜାତି
ଗ୍ରହଁ ସେନାପତି କାହିଁ ଗଲ ତବ,
ଶୂନ୍ୟ କରି ଏ ମାଟି ।

( ୪ )

ସେନାପତି କିମ୍ବା ନୁଆଁଇଲ ତରବାରି ?
ପ୍ରତିଜ୍ଞା ତାର ଶେଷ ନ କରି ସେ
ହେଲ ଗୃହ ଅଭିସାରୀ ।
ଦେଶେ ତ ଲିଭିନି ଚିରଦିନ ଲ୍ଲଗି
ଅନ୍ନର ହାହାକାର
ସେ କିମ୍ପା ଚଳିଲ୍ଲ ନ କରି ତାହାର
ସମୁଚିତ ପ୍ରତିକାର ?

ଓଡ଼ିଆ ଆହୁରି ଦେଶେ ଦେଶେ ପାଏ
ଅଧମର ଅପମାନ
ଦେଢ଼ କୋଟି ଲାଗି ଦେଶେ ଦେଶେ ବୁଲି
ଆଣିବ କେ ସମ୍ମାନ ?

ଦେଢ଼ କୋଟି ମେଳେ ଗୋଟିଏ ତ ତାକୁ
ବାଛିଥିଲୁ ସାର କରି
ସବୁ ମାୟା କାଟି ଚିର ଦିନ ଲାଗି
ସେହି ପୁଣି ଗଲା ଚଳି ।

କାହାକୁ ଚାହିଁଲା ନାହିଁ ନିଷ୍ଠୁର
ରହିଲା ତାହାର ଜାତି
ରହିଲା ତାହାର ପ୍ରିୟ ବନ ବିଲ
ରହିଲା ତାହାର ମାଟି ।

ଆମ ଲାଗି ପରା କଥାକେ କଥାକେ
ଲୁହ ବୋହିଯାଏ ତା'ର
ପାଷାଣ ପରି ସେ ଦେଖୁଛି କିପରି
ଆମର ଅଶ୍ରୁଧାର !

ଦେଢ଼ କୋଟି ଲୋକ ଭଲ ପାଉଥିଲେ
ପରାଣରୁ ବଳି ପରା,
ସକଳେ କହିଲ—ଆଶ୍ରୟହୀନ
ସହସା ତେଜି ଏ ଧରା !

ତାହା ଇଂଗିତେ ତିନି କୋଟି ଆଖି
ଚାହିଁଥାଏ ଅହରହ
ସେ ତ ଗଲା ଚାଲି ମୂଢ଼ ଜନତାରେ
ଚଳାଇବ କିଏ କହ ?

ଦେଶେ ଦେଶେ ବୁଲି ଆଣୁଥିଲା ଘରେ
ଅନ୍ନ ଆମରି ପାଇଁ
ବୁଭୁକ୍ଷୁ ସବୁ ତା' ବିନା କି ହେବୁ,
ସେ କଥା ବୁଝିଲା ନାହିଁ ?

ଏଇ ମନେ ଥିଲା ? ତେବେ କିମ୍ପା କହ
ଏତେ ଲୀଳା ଥିଲା କରି ?
ପ୍ରିୟଜନ ପରି ଟିକିଏ ବାଧିଲେ
ଅଶ୍ରୁ ପଡ଼ିବା ଝରି

( ୭ )

ସେ ସବୁ ଦେଇଣ ଦରିଦ୍ରତର
କରିଛି ଲକ୍ଷ ଜଣେ
ସେ କଥା ସେ ଜାଣେ ? ଜାତି ମରିଯାଏ
ଜଣକର ଏ ମରଣେ
କିମ୍ବା ଗ୍ଲଲିଗଲ ଆହେ ପ୍ରିୟତମ
ନିଖିଳ ଚିତ୍ତହାରୀ
ତୁମ ଗୁଣଯାକ ଗୁଣି ହୋଇ ମନେ
ବେଦନା ଉଠୁଛି ଭରି ।

( ୫ )

ଜଗନ୍ନାଥର ସିଂହ ଦୁଆରେ
କିଏ ଅଛ ପ୍ରତିହାରୀ
ପଥ ଛାଡ଼ିଦିଅ ଯାଉଛି ଦେବତା
ଶ୍ରେଷ୍ଠ ସେ ପୂଜାହାରୀ ।
ଗରୁଡ଼ର ପଛେ କେ ଅଛ ଭକ୍ତ
ଆଡ଼ ହୋଇ ଯାଅ ଭଇ,
ଭକ୍ତର ରାଜା ଆସୁଅଛି ପର
ଦେବତା ପୂଜିବା ପାଇଁ ।
ଧାର୍ମିକ ସବୁ ନିଜ ସୁଖ ଖାଲି
ଦେବତାରେ ଅଛ ମାଗି
ପରସୁଖ ପାଇଁ ସେ ଡାକିଲ୍ଲ ତା'ର
ଦେବତା ରାତ୍ରି ଜାଗି ।
ଭଇ ପଡ଼ୋଶୀରେ ମମତା ଦେଇ ସେ
ପୂଜିଲା ତା ଭଗବାନ
ଦେଢ଼ କୋଟି ଲୋକ ମଙ୍ଗଳ ଲାଗି
ପୂଜିଛି ତା' ନାରାୟଣ ।
ବାଟ ଛାଡ଼ ତାକୁ ଦେବତାର ପଦେ
ଯାଉ ତା' ଆତ୍ମା ମିଶି
ରତ୍ନ-ବେଦୀରୁ ଦେଖୁ ସେ ତାହାର
ଜାତି ଭଇ ଦିବା ନିଶି ।
ସେହି ବେଦୀ ତଳୁ ଆଶୀଷ ତାହାର
ଅମୃତ ସମ ଝରି,
ବହିଯିବ; ତାହା ଉତ୍କଳ ଜନେ
ନେବେ ଅଞ୍ଜଳି ଭରି

ପତିତପାବନ ବାନା ଯୁଗେ ଯୁଗେ
ଶରଣ ଉତ୍କଳର,
ସେହି ବାନା ତଳେ ଉତ୍କଳମଣି
ଜଳୁଥାଉ ଭାସ୍ୱର
ପତିତପାବନ ଦର୍ଶନ ବେଳେ
ନିଖିଳ ଓଡ଼ିଆ ଜାତି
ବାଇଶି ପାହାଚେ ପାଇବ ପତିତ—
ବନ୍ଧୁ ଚରଣ ମାଟି ।
ହେ କବି, ହେ ଋଷି, ବାଗ୍ମି ହେ ତବ
ଚରଣେ ନମସ୍କାର,
ଯେ ପଥେ ଯାଇଛ ଏଇ ମାଥେ ପଡ଼ୁ
ପବିତ୍ର ରେଣୁ ତାର ।
ପୁରୁଷୋତ୍ତମ, ତୁମ ଲଗି ଆମେ
ଧନ୍ୟ ହୋଇଛୁ ପରା,
ମରଣେ ତୁମରି ତେଣୁ ହେ ବିଳପେ
ଆଜି ଉତ୍କଳ ଧରା ।
ତଥାପି ତୁମର ମୃତ୍ୟୁ କି ଅଛି
ତୁମେ ଯେ ମୃତ୍ୟୁଜୟୀ,
ଗୋଟିଏ ଯା' ଥିଲ ମରଣେ ଜନ୍ମ
ଲଭିଛ କୋଟିଏ ହୋଇ ।
ଶ୍ମଶାନ ତବ ଚିତାନଳ ଧରି
ଧନ୍ୟ ଧନ୍ୟ କହେ
ମହାକାଳ ତବ ନାମ ଶିରେ ଧରି
ପୁଲକିତ ହୋଇ ବହେ
ଲକ୍ଷ୍ୟଭ୍ରଷ୍ଟ ଦେବତା ଉର୍ଦ୍ଧ୍ୱେ
ଖସିଆସି ଧରା ପରେ
କର୍ମେ ବଚନ ବନ୍ଧନ କଲ
ଅମୃତ ଜୀବନରେ !
ଚିର ଦରିଦ୍ର ଆମେ ଆଉ ପାଇଁ
ବସିଥିଲୁଁ ହାତପାତି,
ନିଷ୍ଠୁର ତୁମେ ହତାଶ କରିଲ
କିମ୍ପାଇଁ ଛାଡ଼ିଏ ମାଟି ?

---

# ନେତ୍ରୋତ୍ସବ

ଗୋଦାବରୀଶ ମହାପାତ୍ର

ଲିଭାଇ ଦେଇଚ ନେତ୍ର ଆମର
ମହୋଦଧି କୂଳେ ଜଗନ୍ନାଥ
ବରଷକେ ଥରେ ତୁମରି ନେତ୍ର—
ଉତ୍ସବ ପାଇଁ ଚାଲିଛି ଯାତ ।
କାଠ ପାଷାଣର ବିକଳ ପତାରେ
ବରଷକେ ଥରେ ରଙ୍ଗ ଉତାରେ
ଭକ୍ତ, ଟେକିଚି ତୁମରି ଆଶାରେ
ସେଇ ଆଖି ପାଇଁ ଯୁଗଳ ହାତ
ଯେଦିନ ନେତ୍ର ଉତ୍ସବ ଚାଲେ
ସେ ଦିନ ଅନ୍ଧ ହୋଇଚୁ ଆମେ
ଏଇ ଆଷାଢ଼ର ବର୍ଷା ମୁଖର
ଘନ ଅନ୍ଧାରେ ନିବିଡ଼ ଯାମେ
ଡାକି ବୁଲୁ ନଦୀ ସାଗର ତଟରେ
ଏଇ ଓଡ଼ିଶାର ମଶାଣି ପୀଠରେ
ଏଇ ବାଲି ଧୂଳି ପଙ୍କ କାଦୁଅ
କୋଟି କଣ୍ଠର ଆକୁଳ ଗାନେ ।
ଦିଅ ହେ ନେତ୍ର, ଦିଅ ବହିତ୍ର
ଅକୂଳ ସାଗରେ ନିଅ ହେ ଚାଲି
ମହାଶୂନ୍ୟର ରବି ଚନ୍ଦ୍ରମା
ତାରକାରେ ଆମ ନୟନ ଖୋଲି ।
ଏଇ ଲାଞ୍ଛିତ ଏଇ ବଞ୍ଚିତ
ଜାତିଟାରେ ଦିଅ କୃପା କିଞ୍ଚିତ
ସେ ଗୋପବନ୍ଧୁ କରୁଣାସିନ୍ଧୁ
ବରଷ ବରଷ ମାଗୁନ୍ତୁ ଖାଲି ।

---

# ବିଶ୍ୱ ଜୀବନପଥେ

ରାଧାମୋହନ ଗଡ଼ନାୟକ

ଘନ ଅମ୍ବୁଦେ ଭରି ଉଠିଅଛି ପୁରୀର ଆକାଶପଥ
ଟିପି ଟିପି ଟିପି ବିନ୍ଦୁ ବରଷା ଲାଗିଅଛି ଅବିରତ
ସିନ୍ଧୁର ବକ୍ଷେ ବିପ୍ଳବ ତୋଳି ଜାଗି ଉଠିଅଛି ଝଡ଼
ଝାଉଁ ବନ ବିଥି ମାଦକତା ପିଇ ଗର୍ଜୁଛି ମରମର
ସ୍ୱପ୍ନେ ର ସୋହାଗେ ମାତି
ଚଣ୍ଡ ବତାସ ଶୀତ ଶୀତ୍କାରେ ଥରାଇ ଦେଉଛି ଛାତି ।

ପୁରୀର ଗୋଟିଏ କ୍ଷୁଦ୍ର ନିବାସେ କେତେକ ବନ୍ଧୁପାଶେ
ଚିନ୍ତିତ ଗୋପବନ୍ଧୁ ସେ ଦିନ କହିଲେ ସଜଳ ଭାଷେ
''ଦେଖୁଅଛ ତୁମେ ଚିକିତ୍ସା ନିତି ଲାଗିଅଛି ନାନାମତେ
ଭଲ ହେବାର ତ ଲକ୍ଷଣ କିଛି ଦେଖାଯାଉ ନାହିଁ ମତେ
ଆଶା ରହୁ ନାହିଁ ଆଉ
ଅଜ୍ଞାତେ ମୋର ଅନ୍ତର କିବା ଲାଗୁଅଛି ଗୁଉଁ ଗୁଉଁ ।''

''ତୁମେ କି କରିବ ? ଜଗତେ ମଣିଷ ଚେଷ୍ଟା କରଇ ସିନା
ଫଳରେ ତାହାର ଅଧିକାର ନାହିଁ ଦୈବ ଶକତି ବିନା
ଇଙ୍ଗିତେ ଯା'ର ବିଶ୍ୱଭୁବନ ହେଉଅଛି ଆତଯାତ
ନିଶ୍ଚୟ ତୁମ ମନର ବେଦନା ବୁଝିବେ ଜଗନ୍ନାଥ
ତୁମ ଭଳି ଲୋକ ଯେବେ
ସବୁ ଜାଣୁ ଜାଣୁ ଏପରି ହୋଇବ ଆମେ କି କରିବୁ ତେବେ ?''

ନିର୍ମମ ଏକ ସମ୍ବାଦ ତେବେ ମିଳିଲା ଅକସ୍ମାତ
କୁଶଭଦ୍ରାର ବକ୍ଷେ ଜାଗିଛି ବନ୍ୟାର ବିଘାତ
ପ୍ରଳୟର ସ୍ରୋତେ ଭାସି ଯାଇଅଛି ଶତ ଶତ ଘରଦ୍ୱାର
ପ୍ରଳୟର ସ୍ରୋତେ ବୁଡ଼ି ଯାଇଅଛି ଶତ ଶତ ପରିବାର
ଗୋପ ଅଞ୍ଚଳ ଧରି
ଉଠୁଛି କାତର ହାହାକାର ରବ ଗଗନ ମଥିତ କରି

''ଉତ୍କଳ ପରେ ନିୟତିର ଏତ ନିଷ୍ଠୁର ପରିହାସ ''
ବିକ୍ଷୋଭେ ଜଣେ ଜଣାଇଲେ ତହୁଁ ହୃଦୟର ଉଚ୍ଛ୍ୱାସ

''ପ୍ରଳୟଙ୍କର ବନ୍ୟା ମଡ଼କ ଦୁର୍ଭିକ୍ଷର ଦାଉ
ବରଷ ବରଷ ଗ୍ରାସି ଦେଉଅଛି ଚନ୍ଦ୍ରମାରେ କି ରାହୁ
ଶକ୍ତି ଯାଉଛି ତୁଟି
ଅନ୍ୟ ଦେଶର ସଙ୍ଗେ ଏ ଆଜି କେମନ୍ତେ ପାରିବ ଉଠି ?''

ଅପର କହିଲେ 'ଜ୍ଞାନଧନମାନ କଳା ସଂସ୍କୃତି ବଳେ
ଦର୍ପ ଭରେ ଏ ଉଠିଥିଲା ଦିନେ ବସୁନ୍ଧରାର ତଳେ
ଦୃପ୍ତ ପତାକା ଉଡ଼ାଇଥିଲା ଏ ମୁକ୍ତ ଗଗନ ବୁକେ
ଜୈତ୍ର ଗୀତିକା ଉଠାଇଥିଲାଏ ଦିଗ୍‌ବିଦିଗର ମୁଖେ
ଅଭିଶପ୍ତ ଏ ଦେଶ
ଧଷତଳୁ ଦିନେ ଏହିପ୍ରକାରି ସିନା ହୋଇଯିବ ନିଃଶେଷ ।''

ଶୁଣୁଥିଲେ ଗୋପବନ୍ଧୁ ମଉନେ ବାହାରେ ସତେ କି ଜଡ଼
ଆଜି ଦିନର ଏ ଝଡ଼ଠାରୁ ବଳି ଅନ୍ତରେ ଧରି ଝଡ଼
ସମ୍ଭ୍ରମ ଭରେ ନୟନରୁ ଢ଼ାଳି ଅଶ୍ରୁର ଧାର ଦୁଇ
କମ୍ପ୍ର କଣ୍ଠେ ଭଷିଲେ ବଚନ ''ବାହାରିଲି ଏବେ ମୁହିଁ''
ତୁମେ ଏବେ ମୋର ସାହା
ଲଗିଲା ତୁମକୁ ରୋଗୀଟିର ଭାର ମୁଁ ମୋର ଧରୁଛି ରାହା ।''

''କାହିଁ ଯିବ ତୁମେ'' ପ୍ରଶ୍ନ ଉଠିଲା ''ବାହାରୁଚ ଏବେ କାହିଁ ?''
''ବନ୍ୟାଞ୍ଚଳେ—ବନ୍ୟା ପୀଡ଼ିତ ଜନତାର ସେବା ପାଇଁ ।''
''ଏକଇ ପୁତ୍ର ରୋଗେ ବହୁ ଦିନୁ ହୋଇଚି ଶଯ୍ୟାଗତ
ଏତିକି ବେଳକୁ ଦିଶୁଚି ତୁମକୁ ଜନତା ସେବାର ପଥ
ଅଦ୍ଭୁତ ଏ ବିଚାର
ମରମ ତଳେ ଏ ଚିନ୍ତା କିପରି ଲଭିଅଛି ସଞ୍ଚାର ।''

''ଗୃହର ଜୀବନ ପରିଧିରେ ରଚି ସମ୍ମୋହ କାରାପୁରୀ
ବାହାରେ ଅଛି ଯେ ବିପୁଳ ଜୀବନ ମୁଁ ତ ନ ପାରିବି ଏଡ଼ି
ଦିଅ ଛାଡ଼ି ଦିଅ ମତେ
ଚାଲିଯାଏ ଆଜି ଚାଲିଯାଏ ମୁହିଁ ବିଶ୍ୱଜୀବନ ପଥେ ।''

ସହସା ଅପର କକ୍ଷକୁ ଯାଇ ପ୍ରିୟ ପତ୍ନୀର ପାଶେ
ବୁଝାଇ କହିଲେ ମନର ବାସନା ପ୍ରାଣର ଆକୁଳ ଭଷେ ।
ବୁଝଇ କି କେବେ ଜନ୍ମଦାୟିନୀ ? ବୁଝଇ କି କେବେ ନାରୀ
ଅନ୍ତର ଯେବେ ଅଶ୍ରୁ ଆବେଗେ ଫାଟି ପଡ଼ୁଅଛି ଖାଲି ।
ଯିବା ପାଇଁ ଯଦି ଚାହଁ
ମୋତେ ଆଗ ମାରି ସନ୍ତାନଟିରେ ମାରିଦେଇ ଚାଲି ଯାଅ ।।''

ଜୀବନର ମହା—ମାୟା ସମ୍ମୁଖେ  ଉଗ୍ର ସାଧନା ସାଧି
ନିର୍ବାକ ହୋଇ ରହିଗଲେ ତହିଁ ବର୍ଧିର ବିଶ୍ୱଦାଦୀ
ଦଳ ଛନ୍ନ କରି ଥରଟିଏ ଗୃହିଁ ପୀଡ଼ିତ ପୁତ୍ର ମୁଖେ
କ୍ଷିପ୍ର ଚରଣେ ବାହାରି  ପଡ଼ିଲେ ମୁକ୍ତ ଧରଣୀ ବୁକେ
ଶୁଭୁଥିଲା  ପଛ  ଆଡ଼େ
"କେଡ଼େ ଅଦଭୁତ ମଣିଷ ଏ ସତେ ଜନମିଛି ସଂସାରେ ।"

କ୍ଲାନ୍ତ ଶରୀର ମଳିନ ବଦନ, ପଞ୍ଚ ଦିବସ ପରେ
ବନ୍ୟାପୀଡ଼ିତ ଅଞ୍ଚଳୁ ବୀର ବାହୁଡ଼ିଲେ ପୁଣି ଘରେ
ଅଶ୍ରୁ ନୁହଇ ନୟନରୁ ଦେଇ ହୃଦୟ୍ର ରକ୍ତଭରା
ସରୁକ୍ଷ ବଚନେ ପଗ୍ୱରି ଉଠିଲେ ବିଧୁରା ବହ୍ନହରା,
"ଆଉ କି ଦେଖିବ ଏବେ" ?
ବାସନା ତୁମ୍ଭର ପୂର୍ଣ୍ଣ ହେଲା ତ ? ଆଉ କି ଇଚ୍ଛା ତେବେ ?"

ବିଶ୍ୱ ଦରଦୀ ପାଷାଣ କଠୋର ଧୈର୍ଯ୍ୟ—ସାଧନ—ଭରେ
ମରମ ତଳର ଉଦ୍‌ଗତ ଲୁହ ଗ୍ରପି ନେଲେ ମରମରେ
କରୁଣ ଅଧରେ ସ୍ମିତ ବିକଶାଇ ଭଷିଲେ ନବୀନଭବ,
"ଲୁହ ପୋଛି ଏବେ ଦେଖିନିଅ ସଖୀ ! ଅଭିନବ ଏଇ ଲଭ
ଗୋଟିଏ  ପୁତ୍ର  ଦେଇ
ହୃଦୟ ମୋହର ଶତପୁତ୍ର ମୁଁ କୁଡ଼ାଇ ଆଣିଛି ଏଇ ।"

---

# ତମର ବରଗଦ

କାଳନ୍ଦୀଚରଣ ପାଣିଗ୍ରାହୀ

ତୁମ ପାଇଁ ପୁଣି ରଚିବି କବିତା
ଆଜି ଏ ଓଡ଼ିଶା ମାଟିରେ
ଥରି ଉଠେ ପାଦ ! ଯହିଁ ଯାଏଁ ତହିଁ
ଚ୍ଲେଁ କି ମୁଁ ତୁମ ପିଠିରେ ।

ସ୍ୱଗଜ-ପଥରେ ଚ୍ଲିବାକୁ କେତେ
ଦେଖିଥିଲ ପଥ ଗାନ୍ଧ ହେ
ପୂରୁ ନାହିଁ କାହିଁ ଯେତେ ପକାଇଲେ
ତମରି ମାଉଁସ ହାଡ଼ ଯେ ।

ନାହିଁ ! ନାହିଁ ! କେହି ପାରିନି ପକାଇ
ତମରି ସେ ହାଡ଼ ମାଉଁସ
ଧରି ପାରି ନାହିଁ ଆଜି ଯା'କେ କେହି
ମୁଠାଏ ବି ତୁମ ପାଉଁଶ !

ତମରି ବରଗଦ, ତମରି ଡାକରା
କାହା କାନେ ଆଜି ପଡ଼ଇ
ଆଜି ବି ମଣିଷ ପିଲା ବୁଢ଼ା ଦେହ
ବାଟେ ଘାଟେ କେତେ ଗଡ଼ଇ !

ତୁମ ନାମ ଧରି ଗୋପବନ୍ଧୁ ହେ !
ନିଜକୁ ଠକୁଛୁଁ ନିଜେ ତ
ତଥାପି ଆଜି ବି "ଭରତ କମଳେ"
"ପୁଣ୍ୟ ନୀଳାଚଳ" ବିଜେ ତ !

ସତେ କି ଗୋଟିଏ କବିତା ତୁମେ ହେ
ଦେଖିଛ ଯେ ଦୁଇ ଆଖିରେ
ଆଉ ଦେଖିବାକୁ ଦୁନିଆ ଭିତରେ
କିଛି ନାହିଁ ତାର ବାକି ହେ !

ତୁମ ନାମ ଧରି ମାଗୁଛି ବନ୍ଧୁ !
କୋଟି କୋଟି ହେଉଁ ଗୋଟିଏ
ବାଜି ଉଠୁ ପୁଣି ଗୋଟିଏ ଆବାଜ
ଆକାଶେ ସବୁରି ତୋଟିରେ ।

ଗୋଟିଏ ତାଳରେ ସବୁ ପାଦ ପଡ଼ି
ଉଠୁ ହେ ବାଇଶି ପାହାଚ
ତୁମ ନୀଳାଚଳ ନାଥ ଏ ଗଇକେ
ସବୁରି ପାଇଁକି ସାହା ତ !

---

# ଗୋପବନ୍ଧୁ ସ୍ମରଣେ

ସଚ୍ଚିଦାନନ୍ଦ ରାଉତରାୟ

ସୁନାର ଏକ ତାଳଗଛ ଉପରେ ବସିଛି ଏକ ପକ୍ଷୀ
କାଠହଣା ଚଢ଼େଇର ଅଣ୍ଟ ପରି ନାଲି ଗୁଲୁଗୁଲୁ ଆଖି
ସେ ତମେ ନୁହେଁ ।।

ଜୟ ବିଜୟ ଦୁଆରେ ତାର ଘୁପାକପାଉ ରଖି
ଗ୍ଲିଗଲ ଯେ ମନ୍ଦିର ଛାଡ଼ି କେଜାଣି କାହିଁକି
ବର୍ଦ୍ଧି କାନ୍ତାରେ ପୀଡ଼ିତ ପାଖେ ସୁଦୂର ତଳଂମାଳେ,
ତମେ ସିଏ

ତମେ ଧ୍ୟାନ ମୁଦ୍ରାରେ ସମାସୀନ ଅକ୍ଷୋଭ୍ୟ ତ ନୁହଁ
ତୁମେ ମେଘର ଛାୟା ସୁନା ସୋରିଷ ଖେତେ ।
ତୁମେ ସମୁଦ୍ର କି ? ପ୍ରଜ୍ଞା ମିଶା କରୁଣାର ସୁଅ ?
ତୁମେ କିଏ ?

ତୁମେ କିଏ କହ ବାଟୋଇ, କହ ପଡ଼ୋଶୀ ମୋର
ତୁମେ ମୋର ସବୁ ଶସ୍ୟର ଏକେଲା ଜଗୁଆଳ !
ତୁମେ ଆମର ପ୍ରତିଦିନର ଘୋର ଜଞ୍ଜାଳେ
ଅବା ବଇଁଶୀଆଳ ? ?
ସୁଦୂର ସୁରଟିଏ ? ?

———————

# ତୋହର ସାଥୀ

ଅନନ୍ତ ପଟ୍ଟନାୟକ

କିଏ ସେ କହେ ଦେବତା ସେହି
ଦେବତା ସେ ତ ନୁହେଁ ରେ ନୁହେଁ
ଖେଳିଛି ଖେଳ ହସିଛି ହସ
ମଣିଷ ପାଇଁ ମଣିଷ କହେ ।
ସକଳ ଗାଳି ନିନ୍ଦା ସହି
ବରଷା ଝଡ଼ ହରଷେ ବହି
କଅଁଳ ଶିଶୁ ମୁଖରେ ଆଜି
ସେହି ଯେ ନୂଆ କାହାଣୀ କହେ
କାହାର ପାଶେ ଅଜଣା ସେହୁ
ପରଣ କୋଷେ ସବୁରି ରୁହେ ।୧।

ଧୂଳିର ଫୁଲ ମହକ ସେତ
କାହୁଁରେ ଆସି ଯାଏ ରେ କାହିଁ
ସ୍ନିଗ୍ଧ ହାସେ ଆତୁର ହିଆ
ଥରଇ ବ୍ୟଥା ପରଶ ପାଇ ।
ବଜାଇ ନିଜ ଜୟର ତାଳି
ନିଜର ପୂଜା ପ୍ରଦୀପ ଜାଳି
ପଟୁଆରେ ସେ ଆଟୋପେ କେବେ
ଆସିନି ମହାଗରବେ ଧାଇଁ
ଶିଳ୍ପୀ ସେ ଯେ ଉହାଡ଼େ ବସି
ନିହାଣେ ଗୀତ ରଚଇ ଥାଇ ।୨।

ଲୁହରେ ଲୁହ ମିଶାଇ କେହି
ପ୍ରଳୟ ଗୀତ ଜାଳିଛି ଆଉ
ଶିଳାରେ ଶିଳା ବଜାଇ ସିନା
କଳଇ କିଏ ମଣିଷ ଭାଉ ।
କିଏ ସେ କହ ତାହାରି ସମ
ସେନେହ ଶରେ କରିଛି ରଣ

ମରମକିଣା  ନରମସୁରେ
ଶମାଇ ଶତ ଦୁଃଖର ଦାଉ
ତାହାରି ଲୁହ ତାହାରି ହସେ
ଖସିନି କି ରେ ଶାସନ ଗହୁ ।୩।

ଏ ଜାତି ବଡ଼ ଦେଉଳ ସେ ଯେ
ବିସ୍ମୃତିର ବାଲୁକା ତଳୁ
ଦୁନିଆ ଦ୍ୱାରେ ଆଣିଛି ନିତି
ମଣିଷ ସେବା ଅଶ୍ୱେ ଚଳୁ ।
ଏ ଜାତି ଗାଲମାଧବ ସେ କି
ଯାଇନି ନିଜ କୀରତି ଲେଖି
କେତେ ଏ ଜାତି ବୋଇତ ଲାଗି
ମହାଦୀପ ସେ ଅନିଭ ଜଳୁ
ଜୀଆଁ ଏ ତାର ପଗଣତାପେ
ନିଗଣ ଯେତେ ଦୁଃଖୀ ମଳୁ ।୪।

---

# ମରେ କି କେବେ ସେହି ?

ଉଦୟନାଥ ଷଡ଼ଙ୍ଗୀ

ଜାତି ଗୋଟାକୁ ଜୀବନ ଦାନ ଦେଲା ଯେ ଧାତା ହେଲେ
ମରଣ ତାକୁ ପରଶ କରି ପାରେ କି କେବେ ହେଲେ ?
ଗୋଟିଏ ସେ ତ କୋଟିଏ ଦେହେଁ ନ ମାନି ବଡ଼ସାନ,
ନିଜ ଜୀବନ ବିତରି ଦେଲା, ତାର କି ଅବସାନ ?
ମରେ କି କେବେ ସେହି ?
ଜୀଇଛି, ଜୀଇ କାଳକ ଥିବ ନିଜ ଜୀବନ ଦେଇ,

ଦେଶ କାଳିମା ଧୋଇ ଯେ ଦେଲା ବୁକୁ ରକତ ଧାରେ,
ଦେଶର ମାଟି ସମାନ କଲା ନିଜ ମାଉଁସ ହାଡ଼େ,
ନିଃଶ୍ୱାସେ ଯା ହୋଇଛି ପୂତ ଦେଶ ପାତକ ଆଜି
ଡ଼ାକେ ଯାହାର ଯାଇଛି ତୁଟି ମୋହ ଜଡ଼ତା ଘଜି
ମରେ କି କେବେ ସେହି ?
ଜୀଇଛି, ଜୀଇ କାଳକ ଥିବ ନିଜ ଜୀବନ ଦେଇ ।

ନରକେ ଯେହୁ ଖେଳାଇ ଦେଲା ପାରିଜାତର ବାସ
ଫୁଟାଇଦେଲା ମଡ଼ା ମୁହଁରେ ଚିର ଅମର ହାସ,
ସାହାର ଭୂଇଁ ସରସ ହେଲା ଯା ପଦରେଣୁ ପାଇ
ପାଷାଣ ଆଉ ପାଷାଣ ହୋଇ ରହିପାରିଲା ନାହିଁ
ମରେ କି କେବେ ସେହି ?
ଜୀଇଛି, ଜୀଇ କାଳକ ଥିବ ନିଜ ଜୀବନ ଦେଇ ।

ଦୀନହୀନର ସେବାରେ ଯେହୁ ଜୀବନ ଦେଲା ଢାଳି,
ଘଡିରେ ଯାକୁ ନ ହୁଏ ନିଦ ଅପର କଥା ଭଳି,
ଅଇରି ବନ୍ଧୁ ସମାନ ଯାର ସଖା ସୋଦର ଭଇ
ଖୋଜିନି ମାନ ସମ୍ମାନ ଯେ କେବେ ନିଜ ପାଇଁ
ମରେ କି କେବେ ସେହି ?
ଜୀଇଛି, ଜୀଇ କାଳକ ଥିବ ନିଜ ଜୀବନ ଦେଇ ।

ମଣିଷ ଯାକୁ ପକାଏ ମନେ ବିପଦ ଦେଖା ଦେଲେ
ଧନ୍ୟ ହୁଏ ଦେବତା ଯା'ର ଚରଣ ଧୂଳି ନେଲେ,
ମରଣ ଯା'ର ଶରଣ ପଶେ ବଞ୍ଚି ରହିବା ଆଶେ
କାଳ ଯାହାକୁ କରଇ ପୂଜା ପୁରାଣ ଇତିହାସେ,
ମରେ କି କେବେ ସେହି ?
ଜୀଇଛି, ଜୀଇ ଜାଳକ ଥିବ ନିଜ ଜୀବନ ଦେଇ ।

# ଗୋପାଂ-ଦର୍ଶନ

ଜ୍ଞାନୀନ୍ଦ୍ର ବର୍ମା

ଧର୍ମର ଧାରଣା ଏବଂ ମୃତ୍ୟୁର ତତ୍ତ୍ୱ ସନ୍ଧାନ ଭିତରେ
ଧର୍ମପଦ ଓ ନଚିକେତା ଉପାଖ୍ୟାନ ପଢ଼ି
ଆମେ ଯଦି ଗୋପବନ୍ଧୁଙ୍କୁ ଆବିଷ୍କାର କରୁ
ଏକ ବର୍ଣ୍ଣାଢ଼୍ୟ ଫୁଲ ବଗିଚ୍ଚର କେନ୍ଦ୍ରସ୍ଥଳରେ
ମୁଁ ଭାବୁଛି ତାହା ହୁଅନ୍ତା ସେହି ସ୍ମରଣୀୟ
ପୁରୁଷଙ୍କ ଉପସ୍ଥିତିର ଉତ୍ତମ ପରିଚୟ ।

ଚିତ୍ରକରର ହାଲ୍‌କା ହାଲ୍‌କା ତୁଳିଘଷା ଭଳି
କୁହୁଡ଼ିର ଝାପ୍‌ସା ନେଳି ଆସ୍ତରଣ ତଳେ
ମୁହଁ ଦିଶେ ଅନେକ ଆତ୍ମାର, ସେମାନଙ୍କ ଜୀବନର ଫୁଲ ଫୁଟିବାକୁ
ଗୋପବନ୍ଧୁ କରିଥିଲେ ଅଶେଷ ପ୍ରଚେଷ୍ଟା, ମୁଁ ଭାବୁଛି,
ଆଜି ଏଇ ବଗିଚ୍ଚରେ ଫୁଟିଅଛି ସେମାନଙ୍କ ଜୀବନର ଫୁଲ
ଏବଂ ଯେ ଜୀବନ ଝଡ଼ିଥିଲା ବନ୍ୟା ଓ ବାତ୍ୟାରେ
ଦୁର୍ଭିକ୍ଷର ଅଘୋଷିତ ପଦକ୍ଷେପ ତଳେ
ଉଲ୍ଲଂଘିତ ଆତ୍ମାର ଗତିରେ ଏଠି ମଧ୍ୟ ସିଏ ସବୁ
ଫୁଲ ହୋଇଛନ୍ତି ।

ଗୋପବନ୍ଧୁଙ୍କ ମୁହଁରେ ଆଶ୍ୱସ୍ତି, ତାଙ୍କ କଣ୍ଠ ସ୍ୱସ୍ତି ବାଚନରେ
ଫୁଲର ପାଖୁଡ଼ା ପରେ ପ୍ରଶାନ୍ତିର ପରମାଣୁ ସବୁ
ଏହା ତାଙ୍କ ଜୀବନର ପ୍ରଥମ ବିଶ୍ରାମ ! ଫୁଲ ଫୁଟା ପରିବେଶ ।
ଟଗର ଓ ଶେଫାଳିକା, ମନ୍ଦାର ଓ କରବୀରେ ଫାଟିପଡ଼େ ହସ
ତା' ଭିତରେ ଆଖି ଖୋଲେ ଅପରାଜିତାର
ଆଶ୍ୱସ୍ତିରେ ଗୋପବନ୍ଧୁ ସ୍ୱପ୍ନ ବି ଦେଖିଲେ,
ଆମେ ସବୁ ଶିଶୁ !

ବୟସର ଆଧିକ୍ୟ ସାଙ୍ଗରେ ଆମ ଶିଶୁ ପ୍ରାଣତାର ବିଚ୍ୟୁତି ଘଟିନି ।
ବିଗ୍ରହକୁ ପକା କରୁ ଆମେ ଏବଂ ଭାଙ୍ଗିଦେଉ,
ନିଜର ଲକ୍ଷ୍ୟ ହାସଲ ପାଇଁ ସଂଗ୍ରହ ବି କରୁ ପୁଣି ବିଭଗ୍ନ ଅଂଶକୁ ।

ନିଜର ବୈଜ୍ଞାନିକତାକୁ ଢାଙ୍କି ମାଟିର ସନ୍ତାନ ହେବା ପାଇଁ
ବେଳେ ବେଳେ ଚେଷ୍ଟା ମଧ୍ୟ କରୁ ।
ହଠାତ୍ ଗୋପବନ୍ଧୁଙ୍କ ମୁହଁରେ ଫୁଟି ଉଠିଲା ଉଚ୍ଚକିତ ହାସ୍ୟ
(ମହାନଦୀରେ) ତିଳତର୍ପଣ ସାରି ଫେରିଆସି ଆମେ
ଅନେଇଲୁ ସେହି ମୁହଁକୁ
ଫୁଲ ସେଠି ଜମା ନାହିଁ ଘାସର ପଡ଼ିଆ ଖଣ୍ଡ ଆଉ କାକର ଭିତରେ
ଆମ ଉତ୍ଥାନର ପାଇଁ ସିଏ କରିଛନ୍ତି ଆହୁରି ପ୍ରତୀକ୍ଷା ।

---

# ଉତ୍କଳମଣି

ଡକ୍ଟର କୁଞ୍ଜବିହାରୀ ଦାଶ

ତୁମେ ଦି'କୋଟି ଆଖିର ଲୁହେ ଫୁଟିଥିଲ ସ୍ୱର୍ଣ୍ଣ କମଳସମ
ତୁମେ ଦି'କୋଟି ବୁକୁରେ ରକ୍ତେ ଲେଖିଲ ''ଭରତ ଜନନୀମମ' ।

ତୁମେ ମହାଜାଗରଣ ଜାଗର ଜାଳିଲ ମରମେ ଅଗ୍ରଗାମୀ
ତୁମେ ସୈନିକଗଣେ ଚାଳି ନେଲ ରଣେ ପ୍ରଗତି ମୁକ୍ତିକାମୀ

ତୁମ ଅଶ୍ରୁ ସଜଳ ନୟନେ ଫୁଟିଲ ଦୀନ କଙ୍କାଳ ଛବି
ତୁମେ ଉତ୍କଳମଣି ଉଜ୍ଜଳମଣି ଅନ୍ଧାର ନାଶୀ ରବି

ଯହିଁ ଭୋକୀ ନିଶ୍ୱାସେ ହୁତାଶନ ଢେଉ ଖେଳଇ କୁଟୀର ତଳେ
ଯହିଁ ରୋଗୀ ହୃଦୟର ଯନ୍ତ୍ରଣା ଘୋର ପାପ ମନ୍ତ୍ରଣା କରେ

ଯହିଁ ନିରାଶ ଉଦାସ ଅନ୍ତରେ ଘୋର ଅନ୍ଧାର ଘୋଟି ଆସେ
ଯହିଁ ଅଭାବ ନୀରସ ନୟନେ ''ଶୂନ୍ୟ'' ବିଶ୍ୱ ମୂରତି ଭାସେ

ତହିଁ ତୁମେ ଦେବଦୂତ ଆସ ଅଦ୍ଭୁତ ନାଶ ହୃଦୟର ତ୍ରାସ
ତୁମେ ଦୁଃଖର ସାଥୀ ଦୁର୍ଦ୍ଦିନ ରାତି ବିପଦେ ବିପଦେ ଆସ ।

ଆସ ପ୍ରଳୟ କନ୍ୟା ବନ୍ୟା.ମଥିତ ଦୀନ କଙ୍କାଳ ଘରେ
ଆସ ମଳିନା ବସନା କୃଷାଣ କିଶୋରୀ ବିକଳ ଅଶ୍ରୁଜଳେ

ଆସ ତନ୍ୱୀ ତରୁଣୀ ଲଜ୍ଜା ବାରଣେ କରୁଣ ନୟନ ପଥେ
ଆସ ଲାଞ୍ଛିତ ଦୀନ ଆହ୍ୱାନେ ତୁମେ ଦୃପ୍ତ ଝଟିକା ରଥେ

ଆସ ସର୍ବହରାର ସପନେ ସପନେ ବେଦନା ଦଗ୍ଧ ମନେ
ଖେଳ ଅଗଣିତ ଢେଉ ଅନ୍ତରେ ସୁନା ଚନ୍ଦ୍ରମା ତୁମେ ଜଣେ ।

ଯହିଁ ଧନ ଗଉରବେ ଦାନବ ଦିଅଇ ମାନବରେ ଅପମାନ
ଯହିଁ ମାନବେ ମାନବ ନ ଛୁଇଁ କରଇ ବିଶ୍ୱ ଧରମେ ସ୍ନାନ

ଯହିଁ ଶାସକ ଉଡ଼ାଏ ଶୋଷକ ରକ୍ତ କେତନ ଗର୍ବ ଭରେ
ଯହିଁ ଜାତି ସମ୍ମାନ କ୍ଷୁର୍ଣ୍ଣ ବିଦେଶୀ ଇସ୍ପାତ ଚକତଳେ ।

ତହିଁ ପାଞ୍ଚଜନ୍ୟ ଗର୍ଜଇ ତବ ଘୋର ବିପ୍ଳବ ଗାନ
ତହିଁ ଚାଲ ଉତ୍କଳ ଗୌରବ ତବ ଉଦ୍‌ବେଳ ଅଭିଯାନ ।

ତୁମେ ଅପମାନ ଦେଲ ସ୍ୱାର୍ଥରେ ପରମାର୍ଥର ଦରବାରେ
ତୁମେ ମିଶାଇ ଦେଲ ହେ ସକଳ ହୃଦୟ ଭଷ୍ମଲୋତକ ଧାରେ

ତୁମେ ଦୁଆରେ ଦୁଆରେ ଚମକାଇ ଦେଲ ଜନ୍ମଭୂମିର ଡ଼ାକ
ବୀର ଗର୍ଜିଲେ ଘୋର ଝଞ୍ଜାରେ ଯଥା ଦୁର୍ମଦ ବଇଶାଖ

ତୁମେ ଫକୀର ଅଙ୍ଗେ ଅମୀର ହୃଦୟ ଉଦୟ ରଶ୍ମି ସମ
ଆହେ କର୍ମର କବି ଉତ୍କଳ ରବି ଜାତି ଗୌରବ ମମ

ଆଜି ସ୍ୱଗଜ କେତନ ଉଡ଼େ ଫର ଫର ସଫଳ ସ୍ୱପ୍ନତବ
ମେଘ ମନ୍ଦ୍ର ନିନାଦେ ନିନାଦେ ଜାଣଇ ଉଚ୍ଛ୍ୱାସ ଅଭିନବ

ଆଜି ତଡ଼ିତ ଚକିତ ସ୍ପନ୍ଦନେ କିଆଁ ଅଶ୍ରୁ ଆସାର ଧାର
ସତେ ଭଗ ଭଗ ହେଲା ଭରତ ବୋଲି କି କାନ୍ଦ ଜାତୀୟ ତାର ?

ତୁମେ ଆସିବ କି ସତେ ଏକମନ ହେଲେ ହିନ୍ଦୁ ମୁସଲମାନ ?
ଏବେ ଶେଷ ହୋଇନି କି ଉତ୍କଳମଣି ଉଦ୍‌ବେଳ ଅଭିଯାନ ??

ଦେଖି ଛିନ୍ନମସ୍ତା ରକ୍ତଧାର କି ହୃଦୟ ପଡ଼ଇ ଭାଜି ?
ଶତ ଜାତୀୟ ସ୍ୱାର୍ଥ ବଳି ଦାନେ ଆସ ମୁକ୍ତି ସେନା କି ଆଜି

ତୁମେ ଆସ ହୀ'ଷକୁଦ ତଡ଼ିତ ଛନ୍ଦେ ଜାତି ବୈଭବ ହେରି
ଆଜି ଦୁଇ କୋଟି ମନ ଏକ କରିଦିଅ ବଜାଇ ବିଜୟ ଭେରୀ ।

ବୀର ମନ୍ଦ୍ର ନିନାଦେ ଚନ୍ଦ୍ରାନନରୁ ତନ୍ଦ୍ରା ପଡ଼ୁ ହେ ଗଳି
ବସୁ ବିଶ୍ୱ ଆସନେ ନିଃସ୍ୱ ପାଷାଣୀ ଜନ୍ମଭୂମି ମୋ ଅଳି ।

---

# "ଚୋଃ ମିନତ ପାରୁନି ମୁଁ ରଖି"

କୃଷ୍ଣଚନ୍ଦ୍ର ତ୍ରିପାଠୀ

ଶୋଇଛନ୍ତି ଗୋପବନ୍ଧୁ ଦାସ
ତ୍ୟାଗପୂତ ଋଷିଟିଏ ପରି
ନିଦ କିମ୍ବା ଆସୁନି ନୟନେ ?
ଫଳୁଛନ୍ତି ବାରବାର କରି

ଗଣ୍ଡେ ଖାଇ ପଡ଼ିଗଲେ ଶେଯେ,
ସାଙ୍ଗେ ସାଙ୍ଗେ ନିଦ ଆସିଯାଏ
ଆଜି କିମ୍ବା ଆସୁ ନାଇଁ ନିଦ ?
ଅଧଗତି ହେବ ଆସି ପ୍ରାୟେ

ଗାଆଁ ଗଣ୍ଡା ସବୁ ଶୂନଶାନ
ପଡ଼ିଲେଣି ଶୋଇ ଯିଏ ଯହିଁ
ବୁଡ଼ିଯାଏ ଜହ୍ନ, ଆରପାଖ—
ଗିରିଶୃଙ୍ଗ ତଳେ, ରହି ରହି

ବେଳେ ବେଳେ କଡ଼ ଲେଉଟାଇ
ଶୋଉଛନ୍ତି ବ୍ୟସ୍ତ ଲଗେ ଭରି
କେବେ ଚିତ୍ ହୋଇ ଶୋଉଚନ୍ତି
କେବେ ଶୋଉଛନ୍ତି ମୁହଁମାଡ଼ି ।

ତଥାପିତ ନିଦ ନାଇଁ ଆସେ
ଛଟପଟ ଗଡିସାରି ସିଏ —
କର୍ମକ୍ଳାନ୍ତ ଜୀବନର ନିଦ
ବିନୁ ଆଉ ପ୍ରିୟ ସାଥୀ କିଏ ?

ଶୋଇଛନ୍ତି ଗୋପବନ୍ଧୁ ଦାସ
ତ୍ୟାଗପୂତ ଋଷିଟିଏ ପରି
ନିଦ କିମ୍ବା ନେତ୍ରେ ନାହିଁ ଜାଗେ ?
ଭଲୁଛନ୍ତି ବାରବାର କରି

ମନେ ତାଙ୍କ ପଡ଼ିଗଲା ହାୟ !
ଦିଶିଗଲା ତାଙ୍କ ନେତ୍ରଡ଼ୋଳେ
ପ୍ରତିଦିନ ଗ୍ରକର ପିଲାଟି
ଆପେ ଆସି ଗୋଡ଼ ମୋର ମୋଡ଼େ ।

ତିଳେ ମୋତେ ଆରାମତ ଲାଗେ
ଶୋଇପଡ଼େ ମୁହିଁ ସେହି ଲାଗେ
ଆଜି ସିଏ ଆସି ନାହିଁ ବୋଲି
ଆଖିରେ ମୋ ନିଦ ନାହିଁ ଜାଗେ ।

ରାତିସାରା ଅନିଦ୍ରା ମୁଁ ଆଜି
କେତେ ହୁଏ ମୁଁ ବାଡ଼େଇପିଟି
ପରକୁ କି ଗ୍ରହିଁ ରହିବାରେ
ନିଜ ଦୁଃଖ ବାଟ ଯାଏ ଫିଟି ?

ଏଇ ମୋର କଠୋର ପ୍ରତିଜ୍ଞା
ଏଇ ମୋର ବ୍ରତ ଚିରନ୍ତନ
ପାଇବାକୁ ସାମାନ୍ୟ ଆରାମ
କରିବିନି ଦାସତ୍ୱ ବରଣ ।

ଶୋଇଛନ୍ତି ଗୋପବନ୍ଧୁ ଦାସ
ଛାଇ ନିନ ଲାଗି ଲାଗି ନାହିଁ
ଆର ଦିନ ଗ୍ରକର ପିଲାଟି
ଆସେ ଗୋଡ଼ ମୋଡ଼ି ଦେବା ପାଇଁ ।

ପାଦ ଦିଟି ଦେଉଚି ମଞ୍ଜାଳି
କି ଆଦର ସୋହାଗ ସମ୍ଭ୍ରମେ ।
କାଲି ନାଇଁ ଆସିଥିଲା ବୋଲି
ଶଙ୍କି ଯାଉଚି ବି ମନେ ମନେ ।

ଗୋପବନ୍ଧୁ ପଗ୍ରରିଲେ ତା'ରେ
''ଭୟ କିଛି କର ନାଇଁ ବାବା
ଆଜିଠୁଁ ମୋ ବନ୍ଦ ଗୋଡ଼ମୋଡ଼ା
ପିଲାଟି ସେ ହୋଇଯାଏ କାବା

ସ୍ୱକାତର କଣ୍ଠେ ସେ ପିଲାଟି
କହେ ''ମୋରେ କରନ୍ତୁ ନି ମନା
କାଲି ମୁଁ ଯେ ଆସି ପାରିଲିନି
ଦୋଷ ମୋର, ମାଗୁଛି ମୁଁ କ୍ଷମା ।

ଆସିବାକୁ କେତେ ଚେଷ୍ଟା କଲି
ହେଲା ଯେଉଁ ବାଆ ଓ ବତାସି
ଘୂରିଆଡ଼ ଯେ ମେଘ ଅନ୍ଧାର
ପାରିଲିନି ପାରିଲିନି ଆସି ।

କହୁଚି ମୁ ସତକଥା ବାବୁ
ଏଥି ନାହିଁ ଟୋପେ କଳପନା
ନିତି ପାଦ ମୋଡ଼ି ଦେଉଥିବି
ମୋରେ ବାବୁ କରନ୍ତୁନି ମନା ।"

"ତୋ ମିନତି ପାରୁନି ମୁଁ ରଖି
ଗୋପବନ୍ଧୁ କହୁଛନ୍ତି ତା'ରେ
କିନ୍ତୁ ତୋରେ ପାରିବିନି ଛାଡ଼ି
ମୋ ପାଖେ ତୁ ଥିବୁ କାଳେ କାଳେ

କେଉଁ ଦୀନ ଦୁଃଖି କୁଡ଼ିଆର
ହୋଇଥିବୁ ପରାଣ ଶଙ୍ଖାଳି
ପେଟ ପାଇଁ ବାପ ମାଆ ତୋର
କି ନିର୍ଦୟେ ଦେଇଛନ୍ତି ଛାଡ଼ି ।

ଯାଇନି ମୁଁ ତୋହ ପରେ ରାଗି
ଦୋଷ ତୋର ଧ୍ୟାନେ ହେଲେ ନାହିଁ
ତୋହ ଭଳି ସରଳ ସଚ୍ଚୋଟ—
ପିଲାଟିଏ ଦେଖିନି ମୁଁ କାହିଁ ।

ଯିମିତି ତୁ ଆସୁଛୁ ଆସୁଥା
କରୁଥାଆ ତୋର ଯାହା କାମ
ଦାନା ତୋର କେ ପାରିବ କାଟି ?
ପାରିବେନି କାଟି ଭଗବାନ ।"

ହେଲେ-ମଧ୍ୟ ପିଲାଟି ପରୁରେ,
ଆସିନି ମୁଁ କର ମୋତେ କ୍ଷମା
ପାଦ ଦୁଇ ମୋଡ଼ି ଦେଉଥିବି
ମୋରେ ବାବୁ କରନ୍ତୁ ନି ମନା ।"

ଭଲୁଛନ୍ତି ଗୋପବନ୍ଧୁ ଦାସ
"ପଡ଼ିଲି ମୁଁ ବଡ଼ ଅଡ଼ୁଆରେ
କରିଚି ମୁଁ ଯେ କଠୋର ପଣ
ରଖି ନାହିଁ ପାରିବି କି ବାରେ ?

ସେବା କରି ସେବାରେ ଆନନ୍ଦ
ପାଇବାକୁ ଯା'ର ଏଡ଼େ ଜିଦି
ତାରେ ବାନ୍ଧି ପାରିବ ତା' ରଖି
ଧରିତ୍ରୀର କି ବିପୁଳ ନିଧି ?

ତୋ ମିନତି ପାରୁନି ମୁଁ ରଖି
ତୋରେ କିନ୍ତୁ ପାରିବିନି ଛାଡ଼ି
ତୋହ ଭଳି ଜଣେ ବଞ୍ଚିଥିଲେ
ଗୁଲିଥିବ ଏ ମାଟିର ନାଡ଼ି ।''

ଗୋପବନ୍ଧୁ କହୁଛନ୍ତି ଯେତେ
ପିଲାଟିରେ ବୁଝାଇ ସୁଝାଇ
ସେ କି ବୁଝେ ? ''ପାଦ ଦି'ଟି ତବ
ଘଷି ଦେବି ମନା କର ନାହିଁ ।''

କେ କହୁଚି ଏ ମୋହନ ବାଣୀ
ଧରିତ୍ରୀର କେଉଁ ଗୁହା ତଳୁ
କାନପାରି ଗୋପବନ୍ଧୁ ଦାସ
ଶୁଣୁଛନ୍ତି କୁଟୀର ଭିତରୁ ।

ହାତପାତି କେ ବସିଚ କାହିଁ
ଏ ସୃଷ୍ଟିର କେଉଁ ପଥ ଧାରେ ।
କାହା ଦୁଃଖ ସବୁ ପୋଛି ନେବ
ସାଥୀ ହେବ ଆର୍ତ୍ତ ହାହାକାରେ ।

ଦେଖୁଛନ୍ତି କବି ଗୋପବନ୍ଧୁ
ସୀମାହୀନ ସିନ୍ଧୁ ମମତାର—
ଉର୍ମି ପରେ ଉର୍ମି ତୋଳି ଆସେ
ଛାଡ଼ି କେଉଁ ଦିଗନ୍ତ ସେପାର ।

ମୁଗ୍‌ଧ ନେତ୍ର ଫେଇ ଗୋପବନ୍ଧୁ
କରୁଛନ୍ତି ବସି ଅନୁଭବ
ଅଯାଚିତେ କିଏ କା'ରେ ଆସି
ଦେଇଯାଏ ପ୍ରାଣର ସୌରଭ ।

ଯେତେ ମନା ଯେତେ ଅବରୋଧ
ସବୁ ଦୂରେ ଦୂରେ ଫିଙ୍ଗି ଦେଇ
ମର୍ମ—ତଳ ସଞ୍ଚିତ ଯେ ଦାନ
ଢ଼ାଳିଦିଏ ଅକୁଣ୍ଠିତେ କେହି ।

ଧରିତ୍ରୀର ନିଭୃତ ମରମେ
କାହା ଆଖି ଲୁହ ଛଳ ଛଳ
କାହା ଯାନ୍ତ୍ରେ କେ' ପାରିନି ଦେଇ
ଦେବାଇ ଯା' ଟିକିକ ସମ୍ବଳ ।

ନୋ! ମିନତି ପାରୁନି ମୁଁ ରଖି,
ମୋର ମନା ଦିଅନ୍ତୁ ନି କରି
ଶୁଣୁଛନ୍ତି ଗୋପବନ୍ଧୁ କବି
କେଉଁ ବିଶ୍ୱ ଯାଦୁକର
ମହାମନ୍ତ୍ର ପରି !

---

# ଉତ୍କଳମଣି ଗୋପବନ୍ଧୁ

ବାଞ୍ଛାନିଧିଚରଣ ପଟ୍ଟନାୟକ

(ରାଗ—ଶଙ୍କରାଭରଣ)

ଉତ୍କଳର ପୁରପଲ୍ଲୀ ପ୍ଲାବି ଶୋକରେ
ଦୀନବନ୍ଧୁ ଗୋପବନ୍ଧୁ ! ଅମର ଧାମରେ
ଆହା ରହିଲ ନିଶ୍ଚିନ୍ତେ
ଉତ୍କଳର ଭାଗ୍ୟ ଡୋର ଦେଇ କାହା ହସ୍ତେ ? ।୧।

ଆସିଲେ ବରଷା କାଳ ଭୁଜଙ୍ଗୀ ସମାନ
ଫେଣ ଫଣା ଟେକି ଗରଜିବେ ନଦୀମାନ
ବନ୍ୟା—ଗରଳ ଉଦ୍‌ଗାରି
ଜନନୀର ସୁଖ ରାହୁଁ ରାହୁଁ ଦେବେ ସାରି ।୨।

ସର୍ବହରାଗଣ ଯେବେ ଆର୍ତ୍ତ ହାହାକାରେ
ମରଣ କବଳ ପଡ଼ି ଡ଼ାକିବେ କାତରେ
ବିଦାରିଣ ଅନମ୍ବର
ପାଣି ଫାଟି ଲୁହ ହେବ ଅନ୍ତର କାହାର ? ।୩।

ତୁମ୍ଭେତ ଅନ୍ତର ହେଲ ବୁଭୁକ୍ଷୁର ମୁଖ
କାହା ହାତୁଁ ଆଶା ଆଉ କରିବଟି ଢ଼ୋକ ?
ଢ଼ୋକ ପାଣି କିଏ ଦେଇ
ସର୍ବହରା ଉତ୍କଳୀଙ୍କୁ ରଖିବ ବଞ୍ଚାଇ ? ।୪।

ଉତ୍କଳର ଦୁଃଖ ବ୍ୟାଧି ନାଶକ ଭିଷକ
ଉତ୍କଳେ ସ୍ୱରାଜ—ମନ୍ତ୍ର ଆଦ୍ୟ ଉଚ୍ଚାରକ
ଆହେ ଉତ୍କଳ ରାକେନ୍ଦୁ !
ପ୍ରୟୋଜନ ଅଛି ତୁମ୍ଭ ଆସ ଗୋପବନ୍ଧୁ ।୫।

ଭେଦେ ସର୍ତ୍ତି ମରିଅଛୁଁ ଅନ୍ଧ ହୋଇ ସ୍ୱାର୍ଥେ
ଶିଖିଅଛୁ ଅର୍ଥ ପୂଜା ଭୁଲି ପରମାର୍ଥେ
ପଶୁଁ ନୀଚତା ଗହ୍ୱରେ
ସତ ମାର୍ଗ ତେଜି ଭ୍ରମୁଁ ଅସତ ରାହାରେ ।୬।

ଜୀବନ ସ୍ରୋତ ଏ ଦେଶେ ହୋଇଛି ପଙ୍କିଳ
ଦୁର୍ଲଭ ହେଲାଣି ସଚ୍ଚରିତ୍ର ଅନାବିଳ
ନତ ହେଲାଣି ଆଦର୍ଶ
ସମାଜେ ସଂଚରିବାରୁ ଭୌତିକତା ବିଷ ।୭।

ଜନମନ ନାୟକ ହେ ! ଆସ ଅବତରି
ଆଉ ଥରେ କର ଉଚ୍ଚ ଏହୁ ବସୁନ୍ଧରୀ
ତୁମ ଆଦର୍ଶର ସ୍ତରେ
ତୁମ୍ଭ ପ୍ରିୟତମ ଦେଶ ଟେକ ଆଉ ବାରେ ।୮।

ପାଞ୍ଚଜନ୍ୟ ଶଙ୍ଖସମ ଘୋଷୁ ତୁମ୍ଭ ବାଣୀ
ଉଚ୍ଛଳେ ଜୀବନ–ସ୍ରୋତ ବହୁ ହେ ଉଜାଣି
ତୁମ୍ଭ ହାତଗଢ଼ା ଭୂଇଁ
ଧନ୍ୟ ହେଉ ଆଉ ବାରେ ପଦ ତୁମ୍ଭ ଛୁଇଁ ।୯।

---

# ହେ ମହାମାନବ

ବୈକୁଣ୍ଠନାଥ ଦାସ

ଅନ୍ଧାର ଘନ ଅନ୍ଧ ନୟନେ ବନ୍ଧୁ ଆଲୋକ ଦିଅ
ବନ୍ଧୁର ଏଇ କଣ୍ଟକ ପଥେ ହାତଧରି ଚାଲି ନିଅ ।

ଲିଭି ଲିଭିଯାଏ ଜୀବନର ଦୀପ ସରି ସରିଯାଏ ସଳିତା
ତେଲ ଭର ହେ, ତେଲ ଭର ହେ ଉଜ୍ଜଳେ ଉଠୁ ଜଳିତା'

ନେତ୍ରୋହବେ ଗୋପବନ୍ଧୁ ହେ ନେତ୍ର ଫିଟାଅ ବାରେ
ଶ୍ରୀକ୍ଷେତ୍ରର ମର୍ମର ରୂପ କଥା କହୁ ଜନତାରେ ।

ସତ୍ୟବାଦୀର ସତ୍ୟର ସାକ୍ଷୀ ତୁମରି ସମାଧି ତଳୁ
ଦୁର୍ଦ୍ଦିବସର କୁଜଝଟିକାରେ ଦୀପ୍ତ ଦୀପାଳି ଜଳୁ ।

ଏକାମ୍ର ସେ କମ୍ର କାନନେ ଉଠ ହେ କର୍ମ ଯୋଗୀ
ମହାଭିକ୍ଷୁକ, ଦୁର୍ଭିକ୍ଷର ଉଠାଅ ଦୁଃସ୍ଥ ରୋଗୀ

କୋଣାର୍କର ସେ ଅର୍କ ଦୁଆରେ ତୁମରି ମର୍ମ ଭାଷା
ବନ୍ୟା ମଡ଼ିକି କଙ୍କାଳ ବୁକେ ଜାଗ୍ରତ କରୁ ଆଶା

ବ୍ରାହ୍ମଣୀ ଆଉ ବୈତରଣୀର ବନ୍ୟା ଅତଳ ଜଳେ
ହେ ମହା ନାବିକ, ତରଣୀ ମଙ୍ଗ ଧର ହେ ଦୋସର ଥରେ ।

ସିଂହ ଭୂମିର ସିଂହ ଆବାସେ ଉଠ ହେ କଣ୍ଠୀରବ
କଣ୍ଠିତ ତବ ମହା ଉତ୍କଳ ଗାଉ ମହିମ୍ନ ସ୍ତବ ।

ଡ଼ାକେ ମଞ୍ଜୁଳ ମଞ୍ଜୁଷା ଆଜି ମହା-ମହେନ୍ଦ୍ର ଭୂଷା
ତମିସ୍ରା ଫେଇ ଦେଖାଦିଅ ତୁମେ ଉଦୟ ଚଳର ଉଷା

ଅଚପଳା ନାହିଁ ଚପଳା ଚପଳା-ପାରଳା ମେଲଏ ଆଖି
ଗଳା ଉଦ୍‌ଗାରି ବଜ୍ର ଆଉ କେ ହୁଅ ଏ ଜାତିର ସାକ୍ଷୀ

ପୁଣି ଥରେ ଦିଅ ହାଡ଼ ଦି'ଖଣ୍ଡି ନବ ଉତ୍କଳ ଗାଢ଼େ
କେତେ ଯେ ଶକତି, କେତେ ଯେ ଭକତି ମାଉଁସ ଦି'ପଳ ବାଢ଼େ ।

ରାଜ ସଉଧତଳେ କନ୍ଦାଅ ଜନେ ନେତ୍ରୁ ଝରଇ ପାଣି
ଦେଖାଅ ଆବର କଙ୍କାଳ ବୁକ କଳଙ୍କିତ ସେ ଠାଣି ।

ଆଜି କଙ୍କାଳ କାଙ୍ଗାଳ ବୁକେ ଦିଅ ହେ ସଞ୍ଜୀବନ
ଅମୃତ ଲଭୁ ମୃତ ମୃତ୍ତିକା ପିଅ ହଳାହଳ ଘନ ।

ପଦବୀ ଲଳସୀ କ୍ଷମତା ପିଆସୀ ନୁହ ତୁମେ ଦେଶମନ୍ତ୍ରୀ
ଦୈନ୍ୟ ପୀଡ଼ିତ ଜାତି ଜୀବନର ତୁମେ ଯେ ପରମ ମନ୍ତ୍ରୀ ।

ଯେ ମାଟି ମଣିଷ ଚନ୍ଦ୍ର ମୂଲକେ ଖୋଜଇ ଚନ୍ଦ୍ରାନନା
ସେ ମାଟି ମଣିଷ ମାଟି—ମଣିଷରେ ଆଜି ଯେ କ୍ଷୁବଧ ମନା ।

ହେ ମହାମାନବ ଦାନବ ଆବାସେ ପୁଣି ଥରେ ଅବତର
ନେତ୍ରୋତ୍ସବନେ ନେତ୍ର ଫିଟାଅ ଘେନ ନବ କଳେବର ।

# ନବକଳେବର

ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର

(୧)

ଏବେତ ଆଉ ସେ ବଂଶୀ ବାଜେନା ଜୀବନ–ବୃନ୍ଦାବନେ
ଏବେତ ଆଉ ସେ ମନ୍ତ୍ର ଶୁଭେନା ଦେବତା ସିଂହାସନେ
ଏବେତ ଆଉ ସେ ଯଜ୍ଞ ହୁଏନା ନରନାରାୟଣ ପାଇଁ
ନିର୍ମାଖୀ ଲାଗି କାହାରି ମୁଖରେ ଆହା ବୋଲି ଶୁଣା ନାହିଁ ।
ଜୀବନ-ନଦୀରେ ଗିରିସଂକଟ ଶିଳାଚୟ ହୁଏ ଠୁଳ
ଆଜି ଚଉଦିଗେ ଉପୁଡ଼ି ପଡ଼ଇ ଆଶା ପାଦପର ମୂଳ
କୋଟି କୋଟି ଯେତେ ଦୀନହୀନ ପାଇଁ ନ ମିଳେ ସହାନୁଭୂତି
ଆଜି ଧରଣୀର ବକ୍ଷରୁ ସତେ କରୁଣା ଯାଇଛି ତୁଟି
ଜୀବନ ବୃନ୍ଦାବନେ ..
କାହିଁରେ ଦେବତା ପୀଡ଼ିତର ପ୍ରାଣେ ଅଭୟ ଦେବାକୁ କ୍ଷଣେ ।

(୨)

ଅଛି ସେ ଯୁଗର ମହା-ମହୋଦଧି, ଅଛି ସେ ତଟିନୀ ଧାର
ଦୁନିଆ କଣ୍ଠୁ ତୁଟେ ନାହିଁ ଯେବେ ଯୁଗାନ୍ତ ତୃଷା ପର
ଅଛି ସେ ଧରଣୀ ସୁଜଳା ସୁଫଳା ଅଛି ସେ ସୁନାର ମାଟି
ଅଛି ସେ ସୂର୍ଯ୍ୟ, ଅଛିରେ ଚନ୍ଦ୍ର, ଗ୍ରହତାର କୋଟି କୋଟି
ତଥାପି ଜନତା ପାଏ ନାହିଁ ରହା, ମଣିଷ ଉପାୟହୀନ
ବିରଟ ବିଶ୍ୱେ ଭରି ରହିଅଛି କେତେ କେତେ ଦୀନହୀନ
କାହିଁ ରହିଲ ହେ ମାନବ ଦେବତା କାହିଁ ସେ ଅଭୟ ବାଣୀ
ଆଉ କିଏ ଆଜି ମରତେ ଗଙ୍ଗା ବୁହାଇ ପାରିବ ଆଣି ?
ଦେବତାର ଆଜି ନବକଳେବର ବେଳେ
ହୃଦୟ ବିହୀନ ମଣିଷର ହେଉ ନବକଳେବର ଥରେ....

---

# ଚକ୍ରପାଣି

ଯଦୁନାଥ ଦାସମହାପାତ୍ର

ପଶ୍ଚିମ ପାହାଡ଼ମାଳା ଡ଼ାକେ ଆଜି ଜନତାର ବନ୍ଧୁ
ଫେରିଆସ ଏ ଦୁର୍ଦ୍ଦିନେ ଛାଡ଼ିଦେଇ ସ୍ୱର୍ଗର ସୋହାଗ
ଉତ୍କଟ ମରୁଡ଼ି ଆଜି ଗାଁ ଗାଁ ପଦା କରିଦିଏ
ନିଷପ୍ରଭ ମଳିନ ଆଜି ଗୋଧୂଳିର ଶେଷ ସୂର୍ଯ୍ୟରାଗ
କାନ୍ଦେ ଆଜି ପଲ୍ଲୀ ବଧୂ..ଅଧା ମରି କାନ୍ଦେ ଆଜି ଲତା
ନଦୀର ବିକଟ ଛାତି ଭୟଙ୍କର ହୁଏ ସଞ୍ଜବେଳେ
ଶିଆଳ ଓ ହେଟାବାଘ ବଣ ଛାଡ଼ି ଗାଁଆର ଅଙ୍ଗନେ
ସ୍ୱଚ୍ଛନ୍ଦେ ବିହାର କରେ ମାଂସ ଖୋଜି ଦିନ ଦ୍ୱି'ପ୍ରହରେ
ନାହିଁ ଜଳ, ନାହିଁ ଖାଦ୍ୟ ଚର୍ମ ସାର ବୁଭୁକ୍ଷୁ ଜନତା
ପଳାତକ ସମୟର ତୃପ୍ତିହୀନ କ୍ଳାନ୍ତ ପକ୍ଷ ତଳେ
ମିଳେନି ସହାନୁଭୂତି—ଅନିଦ୍ରାରେ ଭଗକ୍ରାନ୍ତ ମଥା
ଶତସ୍ୱପ୍ନ ଜଳିଯାଏ ଭୟଙ୍କର କ୍ଷୁଧାର ଅନଳେ
ଅତ୍ୟନ୍ତ ବନ୍ଧୁର ପଥ ସଙ୍ଗୀହୀନ ପାଥେୟ ବିହୀନ
ପାଣ୍ଡୁର ମୁଖରେ ହାୟ ନାଇଁ ଟୋପେ ହସର ପ୍ରଦୀପ୍ତି
ଜନତାର ଡ଼ାକଘରେ ଥରୁ ଆଜି ସ୍ୱର୍ଗ-ସିଂହାସନ
ଧାଇଁ ଆସ ଗୋପବନ୍ଧୁ ଭାଙ୍ଗି ଦେଇ ସମସ୍ତ ସୁଷୁପ୍ତି
ବାକି ଅଛି ବହୁ କାମ ସମ୍ମୁଖରେ ଦୁର୍ଲଙ୍ଘ୍ୟ ପ୍ରାଚୀର
ଶିଶୁ ମନେ ଭରିବାକୁ ହେବ ଆଜି ଜୀବନର ବାର୍ତ୍ତା
ଏ କଠିନ ସମୟରେ ତୁମେ ସ୍ୱୟଂ ଭଗବାନ ଭଳି
ଚକ୍ର ହସ୍ତେ ଉଭା ହୁଅ । ଏ ଦେଶର ହୁଅ ତ୍ରାଣକର୍ତ୍ତା
ଫେରିଆସ ଗୋପବନ୍ଧୁ—ଜନନୀର କରୁଣ ଆହ୍ୱାନ
ମହାନ ଦଧୀଚି ସମ କର ଆଜି ନିଜ ଅସ୍ଥିଦାନ ।

---

# ଫିଟାଇ କହିବୁ ତୁମ ଆଗେ ସାଥି

ଅଧ୍ୟାପିକା ମନୋରମା ମହାପାତ୍ର

ବରଷକ ଥରେ ନେତ୍ର ଉତ୍ସବ ଆସୁଛି ବିଦାରି ସ୍ମୃତି
ଯୁଗଳ ନେତ୍ର ହରଇ ଯେ ଦିନୁ ଅନ୍ଧ ହେଲା ଏ ଜାତି
ସାଇତିଛୁ ଯେତେ ମରମର ତାତି
ଦୁଃସହ ତାପେ ଫାଟି ନାହି ଛାତି
ଫିଟାଇ କହିବୁ ତୁମ ଆଗେ ସାଥି, ତୁଟାଇ ମରମୁଁ ଭୀତି
ଶୁଣି ଶିହରିବ ଆହେ ଗୁରୁଦେବ ଏ ଜାତିର ଦୁର୍ଗତି ।

ଛିଣ୍ଡାଇ ଦେଲେ ଛାତିର କଲିଜା ଉଛୁଳିବ ନୀଳ ବିଷ
ଛଦ୍ମତାର ଏ ନିର୍ମୋକେ ଛପି ଛକିଛି ଘୃଣ୍ୟ ତ୍ରାସ
ହଜି ହଜି ଯାଏ ଜାତି ନିଃଶ୍ୱାସ
କ୍ଷୟ ରୋଗୀ ସମ ତୁଟେ ବିଶ୍ୱାସ
ଆଶ୍ୱାସ ଖାଲି ଝରିଝରି ପଡ଼େ କ୍ଷମତାର ନିର୍ଯ୍ୟାସ
ପ୍ରତିଶ୍ରୁତିର ରେଖ ବାଲିବୁକେ ମିଥ୍ୟାର ଉଲ୍ଲାସ

ରାଜନୀତି ବଣୁ ମହାକାୟ ସାପ ପ୍ରତିଭାରେ ମାରେ ଚୋଟ
ନିର୍ବିକାରରେ ନିଃଶେଷ କରି ଶୋକ ଉଦ୍‌ଗାରେ ଶଠ
ଅପସରି ଯିବ ସବୁ ସଂକଟ
ସାର୍ଥକତାର ରୁଦ୍ଧ କବାଟ
ଫିଟିଯିବ, ଦେବଦର୍ଶନ ହେବ, ଥରେ ମିଳିଗଲେ ଭେଟ
ମଥା ଅବନତ, ପତାଇ ପଣତ ପ୍ରଶସ୍ତି ଗାଏ ଭାଟ ।

ଶଙ୍କା ବ୍ୟାକୁଳ ଜନତା ଆକୁଳ ନୟନେ ଦୀପାଳି ଜାଳି
ପ୍ରୀତି ସନ୍ଦେଶ ପ୍ରତ୍ୟୟ ଆଣେ ଫୁଟାଇ ପଦ୍ମ ଦଳି
ପ୍ରବଞ୍ଚନାର ପଙ୍କିଳ ଥଳୀ
ବଞ୍ଚିତ ନର ଚରଣରେ ଢାଳି
ଅମୃତ କହି ବିଷ ପରଶଇ ନୀତିରେ ଦିଅଇ ବଳି
ସମ୍ବଳ ତାର, ସମ୍ପଦ ଭାର ଜନତାର କରତାଳି ।

ଶୋଷଣେ ଅଧୀର ଶାସକର ଦଳ ଧନିକ ସାଉଁଟେ ଧନ
ଯେତେ ଗୁଣୀ ଜ୍ଞାନୀ କ୍ଷମତା ମୋହିନୀ ପରଶରେ ଅଚେତନ
ସିଂହ ଦ୍ୱାରରେ ଝୁଲୁଅଛି ତାଲ
ଯେତେ ଟାଉଟର ଯେତେ ପାଲବାଲ
ଖୋଲିଲେ କବାଟ ଫିଟି ଯାଏ ବାଟ ମିଳିଯାଏ ସନ୍ମାନ
ପ୍ରଳୟ ପୟୋଧି ଜଳେ ଭସମାନ ଜନତା ଜନାର୍ଦ୍ଦନ ।

ତମସା ତୁଟିଛି ଆଲୋକ ଫୁଟିଛି ଛୁଟିଛି ସାମ୍ୟରଥ
ଆଲୋକ ଅଥବା ଏ ଯେ ବର୍ତ୍ତୁଳ ଗୋଟିଏ ଲୋହିତ ''କ୍ଷତ''
ଏ 'କ୍ଷତୁଁ ନିୟତ ଝରଇ ରୁଧିର
ଉଛୁଳି ଉଠଇ ଶୋକ ପାରାବାର
ଉତ୍କଳମଣି ମରମର ବାଣୀ ଶୁଣି ହେବ ସ୍ତମ୍ଭିତ
ହୀନ ଦୁର୍ନୀତି ହେଲା ଦୁର୍ଗତି ମସ୍ତକ ଅବନତ ।

ଦରଦୀ ବନ୍ଧୁ ହେ ଗୋପବନ୍ଧୁ ଏଇ ଆମ ସମ୍ବାଦ
ନରନାରାୟଣ ଲୋଡୁଛି ଶରଣ ପଢ଼ି ମରଣର ବେଦ
ବାତ୍ୟା ମରୁଡ଼ି ସାଧୁ ଅଛି ବାଦ
ଭସିଯାଏ ବାସ ମାନ ସମ୍ପଦ
ଦୁଇ ବାହୁ ଟେକି ବିବସ୍ତ୍ର ବାଳୀ ତୋଳଇ ଆର୍ତ୍ତନାଦ
'ସୁନୀତି ବକ୍ଷେ, ଘୃଣାର ଚକ୍ଷେ ପୁଞ୍ଜିତ ଅବସାଦ ।

ଯଉବନ ଏଠି ଜଳି ଜଳିଯାଏ, ଦାରୁଣ ଦୁଃଖ ତାପେ
ମରଣ ସାଗରୁ ଶୀତଳ ଲହରୀ ଆଶ୍ଳେଷି ନିଏ ବୁକେ
ବରତନୁ କରେ ତୁହିନ ଶୀତଳ
ଚଉଦିଗେ ନରନାରୀ କଙ୍କାଳ
ବଞ୍ଚିତ ନର ବଞ୍ଚିବା ଆଶେ ଛୁଟେ ଦୁର୍ଜୟ ଶୋକେ
ଅଭୟ ବରଦ କା'କର ଢ଼ାଳିବ ଅନ୍ନ ଅଭଗା ମୁଖେ ?

ହେ ଦୀନବନ୍ଧୁ, ଲୋତକ ବିନ୍ଦୁ ଝରିଲା କି ପୋତ ମଥା
ଉତ୍କଳମଣି ପାରିବଟି ଶୁଣି ମର୍ମଫଟା ସେ ଗାଥା
ଅତି ନିର୍ମମ ବାତ୍ୟା କରାଳ
ଦୋହଲାଇ ଦେଲା କୋଟି ଅନ୍ତର
ଦରିଆ ସେପାରୁ କେତେ ସମ୍ବଳ ସଂଗ୍ରହ କଲେ ଦାତା
ନିୟତ ଛୁଟିଲା, କିଏ ସେ ଲୁଟିଲା, ନ ମିଳିଲା ତାର ପତା ।

ଯୁବତୀର ଶବେ ଚଳପଥ ଶୋଭେ ଏଇତ ଯାତ୍ରାପଥ
କିଏ ନିର୍ଲଜ, ଏ ଥାନେ ଥାପିବ ଆପଣା ବିଜୟ ରଥ
ବିମାନେ ବିରଜି ଦେଖିଲେ ଏ ଦଶା
ବିଞ୍ଚିଲେ ଅନ୍ନ ବନ୍ଧିତ ଆଶା
ବାନ୍ଧିଲେ ଯେତେ ପ୍ରତାରକ ଦଳ ଲୁଣ୍ଠିବା ଯା'ର ବ୍ରତ
ଅପାରଗ ଯେତେ ଅପସରି ଗଲେ ସଂଗ୍ରାମେ ପରାଜିତ ।

ସେବାରତ ଯେତେ ସେବକ ଛାଡ଼ି ନାମହୀନ ନରନାରୀ
ଉର୍ଦ୍ଧ୍ୱେ ଗୁହିଁଲୁ ଉଛେ ଉଷିଲେ ଶୂନ୍ୟ ଗଗନ ଗୁରୀ
ଖବର କାଗଜ କରି ମଣ୍ଡନ
ଦରଦୀ ପ୍ରାଣର ଗୁଣ କୀର୍ତ୍ତନ
ଝଂକୃତ ନୀତି ଝନ୍‌କାର ସାଥୀ ଶାସନ ଦଣ୍ଡଧାରୀ
କେତେ ପାଞ୍ଚିଲେ କେତେ ବିଞ୍ଚିଲେ ସହାନୁଭୂତିର ବାରି ।

କୁସୁମ କୋମଳ କାମିନୀ ତନୁରେ କର୍ମିତ ପଦ ଥୋଇ
ଆକୂଳେ ତୁମକୁ ସେଦିନ ଡ଼ାକିଲି ହେ ମହା ଜାତିର ସାଇଁ
ଚିର ପ୍ରିୟଜନ ହେ ଦରଦୀ ପ୍ରାଣ
ତୁମେ କି ଦେଖୁନ ଏଇ ଅପମାନ
ଜଟିଳ ଶୁଶ୍ରୂ ଥରଇ ଅଶ୍ରୁ ଆଉ କି ଝରିବ ନାହିଁ
ପଥଭୁଲା ଏଇ ପୀଡ଼ିତ ଜାତିର ଆତ୍ମ ଶୋଧନ ପାଇଁ ?

# ହେ ଆଶାର ଆଲୋକିତ ସରଣୀ

ବ୍ରଜନାଥ ରଥ

ମୃତ୍ୟୁର କାରାଗାରେ ଅମୃତ ଶିଖା ହେ
ସ୍ୱାର୍ଥର ଯବନିକା ଟାଳିଲ
ବିଶ୍ୱର ଦରବାରେ ନିଃସ୍ୱର ସଖା ହେ
କରୁଣାର ବାରିଧାର ଢ଼ାଳିଲ,
ନିରାଶାର ତମସାରେ ହେ ଆଶାର
ଆଲୋକିତ ସରଣୀ
ଏ ଜାତିର ଦୁର୍ଦ୍ଦିନେ
ତୁମେ ମହା—ଜନତାର ତରଣୀ,
ଲୁହ ଆଉ ଲହୁ ଢ଼ାଳି
ମୁକ୍ତିର ରଥ ଗ୍ଭଳି
ପ୍ରଗତିର ପ୍ରଦୀପ ତ ଜାଳିଲ ।।
ଦୁଃଖର ଘନଘଟା
ଘୋଟିଥିଲା ଯେବେ ଦିନେ
ଏ ଜାତିର ଜୀବନର ଆକାଶେ;
ନିଖିଳର ହାହାକାର ଉଠୁଥିଲା ଯେତେବେଳେ
ଏ ଦେଶର ଦିଗେ ଦିଗେ ବତାସେ;
ଅନ୍ଧାର ତୁଟାଇଲ
ତୁମେ ଯେବେ ଫୁଟାଇଲ—
ମଧୁଭରା ଫଗୁଣର ପଲାସ;
ହରିନେଲ ଅଗଣିତ
ଆକୁଳିତ ମରମର ପରାସ
ଝର୍ଣ୍ଣଇଲ ଥର ଥର ବାସନ୍ତୀ ପ୍ରଭାତର ବଉଳ ।।
ସ୍ୱାର୍ଥର ଦାବାନଳ ଆଜି ଯେବେ ହୁତୁ ହୁତୁ ଜଳୁଛି,
ତୁମ କଥା କିଏ ଅବା ବସି ବସି ନିତି ନିତି ଭଲୁଛି ?
ଦରବାରୀ ଆଖଡ଼ାରେ ତମେ ପଛେ ହଜି ପାର
ଦରଦୀର ମରମରେ ତମେ ନୁହଁ ଲିଭିବାର
ଅନାଗତ ଯୁଗ ପାଇଁ ମରଣତ ନାହିଁ ନାହିଁ
ତମେ ଚିର ଦୀପ୍ତିର ମଶାଲ ।।

---

# ଅଶ୍ରୁ ପ୍ରାର୍ଥନା

ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତି

କେତେ ନ କରିଛି ଚେଷ୍ଟା ରଖିବି ତୁମରେ ବାନ୍ଧି ଭାଷାର ନିଗଡ଼େ,
ବଚନେ ସ୍ବରୂପ ତବ ପ୍ରକାଶିବା ଲାଗି ମୋର କେତେ ସେ ପ୍ରୟାସ
ସବୁ ହାୟ ବ୍ୟର୍ଥ ଯାଏ, ଭାଷାତୀତ ହେ ବଚନାତୀତ ।
ତୁମରି ସ୍ମରଣେ ସବୁ ବିଶ୍ଲେଷଣ ଅଶ୍ରୁରେ ସ୍ତିମିତ ।
ତୁମକୁ ବୁଝିବା ଆଗୁଁ ଆପଣାକୁ ନିଜେ ଆଗେ ବୁଝିବାକୁ ହୁଏ,
ନତୁବା ତା' ନିରର୍ଥକ, ମୂଲ୍ୟ ତବ ଦାନ, ତ୍ୟାଗ ସାରଲ୍ୟେ ସୀମିତ ?

ଦେଶପ୍ରୀତି, ଜାତିପ୍ରୀତି ଇତ୍ୟାଦି ସେ ମହାର୍ଘ ବଚନ
କରିଛି ତୁମରେ ବଡ଼ ? ବଡ଼ ତୁମେ ସେ ସବୁ ଉପରେ
ତୁମେ କି ଅବାକ୍ ହେବ ଅକପଟେ ଖୋଲି ଯଦି କୁହେ
ଏ ଦେଶର ଦିଗେ ଦିଗେ ''ଗୋପବନ୍ଧୁ ଆଜି ସଂଖ୍ୟାତୀତ
ଦାନବୀର, ତ୍ୟାଗବୀର, ଦୀନବନ୍ଧୁ ଅମୃତ ସନ୍ତାନ
ତୁମ ଗୁଣଗାନେ ସେମାନେ ଯେ ନିଜେ ଗରୀୟାନ
ତୁମେତ ନିମିତ୍ତ ମାତ୍ର, ମୋ ମତରେ ଉଚିତ୍ ହୁଅନ୍ତା
ତୁମ ଛବି ସ୍ଥାନେ ଯଦି ସେମାନଙ୍କ ପ୍ରତିକୃତି ମାନ
ଶୋଭୁଥାନ୍ତା ତିମିରରେ, ପ୍ରଦୀପର ପ୍ରୟୋଜନ ନାହିଁ
ପ୍ରତିଯୋଗୀତାର ଏହି କୁହେଳିରେ ହେ ଆଲୋକ, ତୁମସ୍ଥାନ କାହିଁ ?
ଛଳନା ଓ ଅଭିନୟେ ସ୍ପର୍ଦ୍ଧା—ଶୀର୍ଷ ଛୁଇଁପାରେ କେହି ?
ତୁମରେ ଦେଖିନି ମାତ୍ର ତୁମ କଥା ଶୁଣିଛି ଯେତିକି
ତା'ର କାଣିଚ୍ୟେ ଯଦି ଏ ଜାତିର ହୁଅନ୍ତା ବିହିତ
ଏତେ ଅସ୍ଥିରତା ଏତେ ସମସ୍ୟାର ପ୍ରଶ୍ନ କି ରୁହନ୍ତା ?
ସମସ୍ତେ ଦେଖିଲେ ତୁମ ବହିରଙ୍ଗେ ନାମ ସଂକୀର୍ତ୍ତନ
ତାକୁଇ ମଣିଲେ ସତ୍ୟ, ମାତ୍ର ତବ ରସ ଆସ୍ବାଦନ
ଅନ୍ତରଙ୍ଗ ଗହଣରେ, ନୃତ୍ୟଗୀତ ପ୍ରତିକ୍ରିୟା ଯା'ର
କେହି ନ ବୁଝିଲେ ହାୟ, ପରିଣତି ତେଣୁ ସିନା ଆଜି ଏ ବିକାର
କେତେ ନ କାନ୍ଦିଛ ତୁମେ ଅତୀତରେ ଏ ଜାତିର ଲାଗି
ସବୁ ଶୂନ୍ୟତାର ତଳେ, ଆଜି କିନ୍ତୁ ପୂର୍ଣ୍ଣତାର ମେଳେ
ପୁନଶ୍ଚ ସେ ଅଶ୍ରୁ ପ୍ରୟୋଜନ ସବୁଥାଇ ନ ଥିବାର ଏ ଯେଉଁ ଯାତନା
ତୁମେ କି ବୁଝୁନ ତା'କି ଦୁର୍ବହ, ନତ ଶିରେ ତେଣୁ ଆଜି
କେତେ ବିନ୍ଦୁ ଅଶ୍ରୁର ପ୍ରାର୍ଥନା ।।

---

# ଆଜି ବି ତୁମକୁ ଖୋଜୁଛି ଜାତି

ବାଞ୍ଛାନିଧି ଦାସ

ତୁମ ଚଲାପଥେ ଫୁଟିଅଛି ଫୁଲ
ତୁମେ ଆସିଥିଲ ପରଶମଣି
ତୁମ ଗୁଣ ଗଣି ଝୁରୁଥିବ ଦେଶ
ବିତିଯିବ ଦିନ ନ ହେବ ଗଣି ।

କେତେ କାଳ ପରେ ଜଣେ ତମ ପରି
ଜାତିର ବିଳାପେ ଆସେ ଅବତରି
କୋଟିର ହୃଦୟ ଆଶା ଅଭିଳାଷ
ମାଟିର ପରାଣ ମୂରତି ଧରି
କୁଟୀରେ କୁଟୀରେ ପ୍ରଦୀପ ଜଳାଇ
ନିଜେ ଜଳିଗଲ ସଳିତା ପରି ।

ତୁମେ ଚାଲିଯିବା ବେଶୀ ଦିନ ନୁହେଁ
ତୁମେ ଆସିଥିଲ ପରତେ ନ ହୁଏ,
ସେ ଦିନ ନିଶୀଥ ନିବିଡ଼ ଉଆଁସ
ଆଜି ପଡ଼ିଅଛି ସୁନେଲି ଖରା
ପ୍ରଳୟର ଝଡ଼ ସେ ଦିନ, ଏବେ ବି
ଶାରଦ ସକାଳ ଶେଫାଳି ଝରା ।

ଗଡ଼ି ଚାଲିଅଛି ସମୟର ଚକ
ଗଢ଼ି ଉଠେ କେତେ ''ନୂଆ କୋଣାରକ''
ବିକଶି ଉଠୁଛି ନୂତନ ଓଡ଼ିଶା
ଆଜି ତ ନେତାର ଅଭାବ ନାହିଁ
ତଥାପି ଝୁରୁଛି ଏ ଜାତି-ଜୀବନ
ମାଟି ମଥାମଣି ହଜିଛି କାହିଁ ?

ସବୁ ଅଛି । ନାହିଁ ତୁମରି ହୃଦୟ
ଜାତି ଲାଗି ହେବ ଅଧୀର ଅଥୟ

ଆପଣାର ହାଡ଼ ମାଉଁସ ମିଳାଇ
ଗାଡ଼ ଭରିଯିବ ଦଧୀଚି ପରି;
ମରି ନାହଁ ତୁମେ ମରି ପାରିବନି
ମାଟି ଡାକେ ଆସ ଶରୀର ଧରି ।

ଏବେ ବି ଜାତିର ଭଜି ନାହିଁ ନିଦ,
ଆସିଛି ମୁକତି ରଖିନାହିଁ ସ୍ୱାଦ
ନିଜ ରୀତିନୀତି ବେଶ ପରିପାଟୀ
ଭବଭାଷାଠାରେ ଆଦର ନାହିଁ,
ସଭ୍ୟତାର ଏଇ ସଂକଟେ ଥରେ
ଗୋପବନ୍ଧୁ କି ଆସିବ ଧାଇଁ ?

---

# ବାଞ୍ଛିତ

ଶ୍ରୀମତୀ ସ୍ନେହଲତା ମହାନ୍ତି

ଅବାଞ୍ଛିତ ଏ ବାସ୍ତବ ପ୍ରତି ପ୍ରାଣେ ଶଙ୍କାର ସ୍ପନ୍ଦନ
ଅକସ୍ମାତ୍ ବନ୍ଧୁରୂପୀ ପ୍ରତିବେଶୀ ଶତ୍ରୁ ଆକ୍ରମଣ
ସଂଗ୍ରାମର ଲେଲିହାନ ଶିଖା......
ଗ୍ରାସ କରି ଶାନ୍ତି ସ୍ୱସ୍ତି-ପ୍ରଗତିର ଲକ୍ଷ୍ୟ ରୂପାୟନେ
ଏ ଦେଶର ବୁକେ ଦିଏ ଦେଖା ।

ଶାସନର କଳ୍ପବଟେ ବସା ବାନ୍ଧେ ଅନ୍ୟାୟ ଶକୁନି
ସଂସ୍କୃତିର ଶବ ପଚି ରିକ୍ତ କରେ ସଭ୍ୟତାର ବାୟୁ ।
ଅଶାନ୍ତିର ଅନ୍ଧକାରେ ଏ ମଣିଷ ପଥ ପାଏ ନାହିଁ
ଅଭାବର ଅଗ୍ନୁତ୍ପାତ ଲୁଟି ନିଏ ଅକାଳରେ ଆୟୁ
ଏ ବିବିକ୍ତ ପରିସ୍ଥିତି......
ଅବାଞ୍ଛିତ ଆତ୍ମଜ୍ୱାଳା ଉପସ୍ଥିତି ଲାଗି
ଗୋପବନ୍ଧୁ ! ଦେଶ ବନ୍ଧୁ ! ଜାତି ବନ୍ଧୁ !
ହେ ନର ଦେବତା
ବିରାଟ ବ୍ୟକ୍ତିତ୍ୱ ତବ, ପ୍ରତି ପ୍ରାଣେ ଉଠୁ ଆଜି ଜାଗି

ତୁମର ତ୍ୟାଗର ଶିଖା ପ୍ରତି ପଥ ଆଲୋକିତ କରୁ
ତୁମ କଳ୍ପନାର ଫୁଲେ ଭରି ଉଠୁ କୋଟି ମନ ତରୁ
ନିର୍ଦ୍ଦେଶିତ ପଥ ତବ ଫିଟିଯାଉ ଅଶେଷ ନୟନେ,
ଏ ମଣିଷ ଲିପ୍ତ ରହୁ ତବ ପଦ ପଦାନୁସରଣେ
ଏତିକି ବାଞ୍ଛିତ ଆଜି ଏ ଅଶୁଭ ଇତି ହେବା ପାଇଁ
ଏ ଜନତା ଲୋଡ଼େ ଆଜି ତୁମ ସତ୍ତା ପ୍ରତ୍ୟେକ କ୍ଷେତ୍ରରେ ।

---

# ଏକ ନୂତନ ଆବିର୍ଭାବ ପାଇଁ

ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ

ଏକ ନୂତନ ଆବିର୍ଭାବ ପାଇଁ ଆମର ପ୍ରତୀକ୍ଷା
ଆମେ ଅନାଇଁ ରହିଚୁ ସେହି ପ୍ରଭାତର ସୂର୍ଯ୍ୟକୁ
ଯେଉଁ ଦିନ ତୁମ ପରି ପୁଣି ଜଣେ ଯୁଗପୁରୁଷ ଆସିବେ
ଆମକୁ ବାଟ ଦେଖାଇବା ପାଇଁ ।

ସେ ଦିନ ଆମେ ଏ ଦୀର୍ଘ ରାତ୍ରିର ଘୋର କଟାଇ
ଆଗେଇ ଚାଲିବୁ "ଉଦୟାଚଳର ସେ ତୀର୍ଥ-ପଥକୁ
ଯେଉଁଠି ନୂତନ ପୃଥିବୀର ନୂତନ ଜୀବନ
ଏକ ଗଭୀର ଅନ୍ଧକାରର ମାୟାବୀ ରାଜ୍ୟରେ
ଆମେ ଦିଗ୍‌ଭ୍ରାନ୍ତ
ଏକ ପଚା ସଢ଼ା ଜୀବନର ଦୁର୍ବହ ମୁଣ୍ଡ ବୋଝାଇ
ଆମେ ଚାଲିଛୁ......
ଆମ ରକ୍ତରେ ସଞ୍ଚରି ଯାଇଛି
ବହୁ ଘୃଣ୍ୟ ବ୍ୟାଧିର ଜୀବାଣୁ......
ବଡ଼ ବଡ଼ କଥାର ଭେଳକବାଜି ଭିତରେ
ଆମେ ବିକଳାଙ୍ଗ କ୍ଳୀବ
ଆମକୁ ଲୋଡ଼ା ଏକ ନୂତନ ଉଚ୍ଛ୍ୱାସ
ଏକ ନୂତନ ଚିକିତ୍ସା
ଚନ୍ଦ୍ରଲୋକକୁ କିଏ ଆଗ ଗଲା
ଆମର ସେଥିରେ କି ଯାଏ ଆସେ
ଆମେ ତ ଜୀବନ୍ମୃତ......
ବାହାରର ସମସ୍ତ ଚମତ୍କାରୀ ପ୍ରଗତି ଭିତରେ
ଆମ ଭିତରଟା ଶୂନ୍ୟ ରୋଗଗ୍ରସ୍ତ ।
ଆତ୍ମାର ଜଡ଼ତାରେ ପ୍ରାଣ ପର୍ଯ୍ୟୁଦସ୍ତ

ଆଜି ଦରକାର ପୁଣି ଜଣେ କାହାର କାଉଁରୀ ନେତୃତ୍ୱ......
ଆମର ସକଳ ଗ୍ଲାନି....ସକଳ କ୍ଲୈବ୍ୟର ଅପନୋଦନ ପାଇଁ
ଜୀବନକୁ ସୁନ୍ଦର କରିବା ପାଇଁ

ଅନ୍ତରକୁ ନିର୍ମଳ କରିବା ପାଇଁ
ରକ୍ତକୁ ବ୍ୟାଧି ଶୂନ୍ୟ କରିବା ପାଇଁ
ଆତ୍ମାକୁ ପ୍ରୋଜ୍ଜ୍ୱଳ କରିବା ପାଇଁ
ଆଜି ଆମର ଲୋଡ଼ା
ପୁଣି ଏକ ଯୁଗାନ୍ତକାରୀ
ପଥ ନିର୍ଦ୍ଦେଶ
ଏକ ବଳିଷ୍ଠ ଆହ୍ୱାନ ।

ଆଉ ଜଣେ ବୁଦ୍ଧ, ଆଉ ଜଣେ ଯୀଶୁ
ଆଉ ଜଣେ ଗାନ୍ଧୀ ବା ଆଉ ଜଣେ ଗୋପବନ୍ଧୁ
ସମଗ୍ର ପୁରାତନର ଗ୍ରନ୍ଥି ଛେଦନ କରି
ଯେ ନୂତନର ସନ୍ଦେଶ ଦେବେ
ଆମେ ତାଙ୍କରି ଆଗମନକୁ
ଅନାଇ ରହିଛୁ......
ଅନାଇ ରହିଛୁ......

# ଉତ୍କଳମଣି

ରବୀନାରାୟଣ ମହାପାତ୍ର

ଛୁରିଅନା କୁଞ୍ଜେ ଉତ୍କଳମଣି ପଡ଼ିଲ କି ଆଜି ଶୋଇ
ଏବେ ବି ଏ ଦେଶେ ଦଳିତ କରୁଛି ମରୁଡ଼ି ଅଥବା ଧୋଇ ।

ସ୍ୱରାଜ ପରେ ବି ଏ ଦେଶ ପ୍ରଗତି ପଥେ ହାୟ ବହୁ ଗାଡ଼
ଗାଡ଼ ପୂରିବାକୁ ଖୋଜା ପଡ଼ିଲଣି ଦଧୀଚିର ମାଂସ ହାଡ଼

ତମ ଚିତାନଳ ନିୟୁତ କଣିକା ଶମଶାନ କୋଳୁ ଉଠୁ
ତମରି ସାଧନା ଏ ଦେଶ ସମାଜେ ଶତଦଳ ହୋଇ ଫୁଟୁ ।

ଯୁବ ଶକ୍ତିରେ ଉନ୍ମାଦ କର ! ଉଦ୍‌ବେଳ କର ଆଜି
ଏ ମାଟି ମାଆର ସକଳ ଯାତନା ନିମିଷେ ଯାଉ ହେ ଭଜି ।

ଉଠ ଗୋପବନ୍ଧୁ ! ମହାକାଳଜୟୀ ! ଜନତାର ସେବା ପାଇଁ
ଜନନାୟକର ସେବା ଜାତକରେ ବିଶ୍ରାମ ନାହିଁ କାହିଁ ।

ଅନ୍ଧାର ଶେଷେ ଏ ଦେଶ ଯୁବକ ଶପଥ କରୁ ହେ ନେତା
ଏଇ ମାଟି ପାଇଁ ହସି ହସି ସିଏ ହେବ ପରା ନଚିକେତା ।

ଧର୍ମପଦର ଜୀବନ ଚିନ୍ତା ଶିଖାଇବା ପାଇଁ ଆସ
ତମରି ହାତର ଦୀପଶିଖା ଦେଉ ଅନ୍ଧାରେ ବିଶ୍ୱାସ ।

---

# ସ୍ମୃତିର କଣିକା
୬୦

**ଗୌରଚନ୍ଦ୍ର ମହାପାତ୍ର**

କେତେ ଦିନ ତଳ କଥା—
ହଇଜାରେ ପଡ଼ି ଭୂଇଁରେ ଗଡ଼ିଲା
ନିତି ପ୍ରତି କେତେ ମଥା ।
ଶମଶାନେ ଖାଲି ମାଳ ମାଳ ଶବ
ଘରେ ଘରେ ହାହାକାର ।
କିଏ ବା କାହାର ଡାକଗ ଶୁଣୁଛି
ଉଛନ୍ନ ପ୍ରତି ଘର ।
କେଉଁ ଘରେ ରୋଗୀ ନ ମରୁଛି କହ
କିଏ କା'ର ହେବ ସାହା
ବଞ୍ଚି ରହିବା ବାଟ ଦିଶୁ ନାହିଁ
ଦିଶୁ ନାହିଁ କିଛି ରାହା ।

+ + + +

ଦାଣେ ଆପଣେ ତ ଶୁଣି ଏ ଉଦନ୍ତ
ତୁରନ୍ତ ଆସିଲେ ଧାଇଁ
ଗ୍ରାମ ଗ୍ରାମ ବୁଲି ମରଣର ସାଥେ
ରଣ ସେ କରିବା ପାଇଁ ।
ଘରେ ଘରେ ବୁଲି ଔଷଦ ବିତରି
ସରଗେ ଖୁଆନ୍ତି ପଥି
କେଉଁ ଘରେ ଯାଇ ଆଶ୍ୱାସନା ଦେଇ
ପଢ଼ନ୍ତି ପୁରାଣ ପୋଥି ।
ସାଥିରେ ଯାଆନ୍ତି କର୍ମୀ କେତେ ଜଣ
ଡାକତର ବାବୁ ଜଣେ
ସଞ୍ଜ ବେଳେ ଯାଇଁ ବିଶ୍ରାମ ନିଅନ୍ତି
ବୁଲି ବୁଲି ଏଣେ ତେଣେ ।

+ + + +

ଦିନେ ବୁଲି ବୁଲି ଥକିଗଲେ ଅତି
ତହିଁ ଥିଲେ ଯେତେ କର୍ମୀ
ଥକିଲେ ଡାକ୍ତର ଗୋପବନ୍ଧୁ ଆଉ
ସାଙ୍ଗସାଥି ସେବାଧର୍ମୀ ।

ହାଲିଆ ହୋଇ କି ଡାକତର ବାବୁ
କହିଲେ, 'ବିନ୍ଧୁଚି ଗୋଡ଼
ମଣିଷ ସବୁ ତ ଗଲେଣି ଗ୍ରାମରୁ
ଭୂତ ଭଲ ଗୋଡ଼ ମୋଡ଼ ।"

ପରିହାସ ଛଳେ ଏତକ ବଖାଣି
ଏଣୁ ତେଣୁ ଗଣ୍ଡେ ଖାଇ
ଡାକତର ବାବୁ ତରତର ହୋଇ
ବିଛଣା ଧରିଲେ ଯାଇ ।

\+ \+ \+ \+

ନିଘୋଡ଼ ନିଦରେ ଶୋଇଗଲେ ସବୁ
ବିଛଣା ଛୁଇଁଲ କ୍ଷଣି
ଜଣକ ଆଖିରେ ନିଦ ଆସୁ ନାହିଁ
କାହିଁକି ଅବା କେଜାଣି ।

ଧୀରେ ଧୀରେ ଉଠି ଡାକତରଙ୍କର
ବିଛଣା ପାଖରେ ବସି
ତେଲ ହାତ କରି ପାଦ ବେନି ତାଙ୍କ
ଦରଜରେ ଦିଏ ଘଷି ।

ହାଉଳି ଖାଇଲେ ଡାକତର ବାବୁ
'କିଏ' 'କିଏ' ଦେଲେ ଡାକ
"ଭୂତ ନୁହେଁ ମୁହିଁ— ମଣିଷ" ବୋଲି କି
କହିଲ ଗୋଟିଏ ଲୋକ ।

ଆଖି ମଳି ମଳି ଡାକତର ବାବୁ
ଅନ୍ଧାରେ ନ ପାରେ ଚିହ୍ନି
ଅଣ୍ଡାଳି ପକାନ୍ତି ଦେହ ମୁହଁ ତାଙ୍କ
ପାରିବେ ବୋଲି କି ଜାଣି ।

\+ \+ \+ \+

ହାତ ମାରିଦିଏଁ ଗୋଡ଼ରେ ଟିକିଏ
ଶୁଅନ୍ତୁ ଶୁଭେ ବଚନ,
କେତେ ଲୋକଙ୍କର ଜୀବନ ରହିବ
ସଚେତ ହେଲେ ଆପଣ ।"

ଚମକି ଉଠିଲେ ଚିକିତ୍ସକ ବାବୁ
କହିଲେ ବିନୟ ହୋଇ–
"ଅଯଥା କି ଲାଗି ଅପରାଧ ଦୋଷ
ମୋ ମୁଣ୍ଡେ ଦେଉଛ ଥୋଇ ?

ଏ ଦେଶର ତୁମେ ମଉଡ଼ମଣି ହେ
ମୋ ପଦେ ଦେଉଛ ହାତ
ଏହି ପାପ ଲାଗି କ୍ଷମା ଦେବ, ନାହିଁ
ମୋତେ କେବେ ଭବିଷ୍ୟତ ।

\+ \+ \+ \+

ବେନିଙ୍କ ନୟନ ଲୁହ ଢଳ ଢଳ
ବେନିଏଁ ରହିଲେ ମୂକ
ପୀଡ଼ିତର ପ୍ରୀତି ଦୁହିଁଙ୍କ ଦେଇଛି
ଦୁଃଖରେ ଅଲିଭ ସୁଖ ।

---

(ଗୋପବନ୍ଧୁଙ୍କର କର୍ମମୟ ଜୀବନର ଗୋଟିଏ ବାସ୍ତବ ଘଟଣା)

# କୁହ ଆଜି ଗୋପବନ୍ଧୁ ଦାସ

ମୁରଲୀମୋହନ ଜେନା

( ୧ )

ମୋ ବିଗ୍ରେ, ମୁଁ ପଗ୍ରେ
ତୁମେ ମୋତେ କୁହ କୁହ
କୁହ ଆଜି ଗୋପବନ୍ଧୁ ଦାସ
ଯେଉଁଠାରେ ଦେଶ ସେବା ମଦ ଆଉ କୁକୁଡ଼ାର ଝୋଳ
ତମରି ସେ ତତ୍‌କାଳୀନ ଦେଶ ସେବା, ଆତ୍ମୋତ୍ସର୍ଗ
ଶେଷେ ପୁଣି ପୁତ୍ର ଅବହେଳା, ଅନାଦରେ ପୁତ୍ରର ମରଣ
ଏହି ସ୍ମୃତି ଆମ ପାଖେ ରହିବ କି ନାହିଁ, ମଦ ଆଉ କୁକୁଡ଼ା ଝୋଳରେ
ସେଇ କଥା ମନେ ଆଣେ ଭୟଙ୍କର ତ୍ରାସ
କୁହ ଆଜି ଗୋପବନ୍ଧୁ ଦାସ ??

( ୨ )

ଡାର୍‌ଉଇନ୍ ଥିଓରିର ଯେଉଁ ସରଭାଇଭାଲ୍ ଫିଟେଷ୍ଟର କଳି
ଏଇ ନ୍ୟାୟ, ଏ ମାପକାଠିରେ
ଯେଉଁଠାରେ ଫୁଟି ଉଠେ ଦେଶ ସେବା କଳି ??
ସେତେବେଳେ ସେ ଫୁଟନ୍ତ କଳିର ମହକେ
ତମେ ଏକା ଦୀନବନ୍ଧୁ ଗୋପବନ୍ଧୁ
ତମରି ସେବାର ସ୍ୱାଦ
ସତେ ଅବା ଆମେ ଏଠି ଅନୁଭବ କରିବୁ କି ନାହିଁ ??
ଯେଉଁଠାରେ ଦେଶ ସେବା ନାଆଁରେ ନାଆଁରେ
ପରସ୍ପର ଗୋଇ ଖୋଳାଖୋଳି
କାଠଯୋଡ଼ିଠାରୁ ପୁଣି ମହାନଦୀଯାଏ
ଲାଗିଅଛି ନିନ୍ଦା ପର୍ବ ରସ
ତମ ସ୍ମୃତି ରଖିବାକୁ ଆମେ ସତେ କି ଯୋଗ୍ୟ ଦାୟାଦ ?
କୁହ ଆଜି ଗୋପବନ୍ଧୁ ଦାସ ......

---

# ଗୋପବନ୍ଧୁ

ପ୍ରମୋଦକୁମାର ମହାନ୍ତି

ଅପାରଗ ଅଦାତା ମୁଁ ଅକାରଣ ଜୀବୀ
ମୁହିଁ ନ ଜାଣଇ ତୋତେ କେଉଁମତେ ସେବି ।
—ସାରଳା ଦାସ

ତୁମରି ଚେହେରା ଆମେ ଦେଖିଗଲୁ
ଆତ୍ମାର ଭଙ୍ଗା ଆରିସିରେ
ଭକ୍ତି ଆଉ ନମ୍ରତାର ନିଶୁନ୍ ଗାଆଁରେ
ନିବୁଜ୍ କୋଳପ ଭଙ୍ଗି ତୁମକୁ ପାଇଲୁ
ସମୟର ଶୂନ୍ୟ ସିନ୍ଦୂକରେ ।
ମୋ ପିତୃପୁରୁଷ ଯଥା ବାପା, ବୋଉ, ଜେଜେ ଇତ୍ୟାଦିଙ୍କ
ରକ୍ତ ପୋଷାକରେ
ନିଜକୁ ବୁଡ଼ାଇ ରଖି ଆପାଦ ମସ୍ତକ
ତାଳପତ୍ର ଛତା ତଳେ ତୁମେ ବି କାନ୍ଦୁଛ—
ଭଙ୍ଗି ବହୁ ବେହେଲା, ବଇଁଶୀ, ସାରଙ୍ଗି ଓ ଚୁପ୍ ସାହାନାଇ ?
ପଞ୍ଜୁରୀ ପୀଡ଼ିତ ଏକ ବଣିଚଢ଼େଇର ଗୁମୋଟ୍ ଆଖିରେ
ତୁମେ କି ଜୀଇଚ, ଏକ ବିନ୍ଦୁ ମାଲ୍‌କୋଷ ହୋଇ ?
ଅଥବା ଗାଉଚ ଗୀତ ସମୁଦ୍ର ସମାନ
ପ୍ରତିଦିନ ପାହାନ୍ତାରେ ଈଶ୍ୱରଙ୍କୁ ନିଦରୁ ଉଠାଇ
କହେ—
ପୃଥିବୀର ଓଠରେ କି ତୁମେ ମୁଠେ ନୀଳହସ ?
ଆପଣା ଦେଉଳେ ଅବା ଲୁହଭିଜା ଶବ୍ଦର ପାହାଚ ?
ମାନବିକତାର ଇନ୍ଦ୍ରଦ୍ୟୁମ୍ନ ଆଣ୍ଠୁକୁଡ଼ା ହେଉଥିଲା ବେଳେ
ତୁମେ ଏକ ମହାଦୀପ
ଉର୍ଦ୍ଧ୍ୱତାର ଆହୁରି ଉର୍ଦ୍ଧ୍ୱରେ
ନୀଳଚକ୍ର କୂଳେ ।

---

# କୋଟିଏ ପ୍ରଣତି ଝରିପଡ଼େ

ଶ୍ରୀମତୀ ତୁଳସୀ ଦାସ

କୋଟି କଣ୍ଠରେ ଶୁଭେ ଆଜି ଖାଲି ତୁମ ବନ୍ଦନା ଗୀତି
କୋଟି ଅନ୍ତରେ ଜାଗେ ଆଜି ତୁମ ଋଣା ସୁଧା ପଣା ପ୍ରୀତି
କୋଟି ମନ ତଳେ ତୁମ ବଣ୍ୱଭୟ ନିରିମାଣିଛି ଯେ ନୀଡ଼
କୋଟି ରଜନୀର ପୂର୍ଣ୍ଣଶଶୀ ହେ ତୁମ ସ୍ତୁତି କରେ ଭିଡ଼ ।

କୋଟି ହୃଦୟର ଅଧିପତି ଆହେ ମହାରଷି ମହୀୟାନ
କୋଟି ଜୀବନର ଶୁଭଶିଷଦାତା ଜନତାର ଭଗବାନ
କୋଟି ମଣିଷର ପ୍ରାଣ ସିନ୍ଧୁ ଯେ ଉଦ୍‌ବେଳ ତୁମ ପାଇଁ
କୋଟି ଦୀନ ଜନ ବାନ୍ଧବ ଆହେ କୋଟି ଅସହାୟ ସାଇଁ ।

କୋଟି ନୟନରେ ଏବେ ବି ନାଚୁଛି ତୁମ ମହାଦାନୀ ରୂପ
କୋଟି ଶ୍ରବଣରେ ଏବେ ବି ଉଠୁଛି ତୁମ ମମତାର ଧୂପ
କୋଟି ଲପନରେ ଏବେ ବି ଖେଳୁଛି ତୁମରି କରୁଣା ବାଣୀ
କୋଟି ବୁକୁ ତଳେ ଉଜାଣି ବହୁଛି ତୁମ ନୟନର ପାଣି ।

କୋଟିଏ ପତିତ ମଥିତ ବିଳପେ ତୁମ ଦରଶନ ପାଇଁ
କୋଟିଏ ପ୍ରଣତି ଝରିପଡ଼େ ଆଜି ତୁମରି କୀରତି ଗାଇ ।

---

# ଗୋପବନ୍ଧୋ ପ୍ରସୀଦ

ତ୍ରିବିକ୍ରମ ପଣ୍ଡାଶର୍ମା

ଧନ୍ୟା ବୟଂ ଖଳୁ ସଦା ତ୍ୱଦପାରକୀର୍ତ୍ତ୍ୟା
ହେ କର୍ମବୀର ପୁରୁଷୋତ୍ତମ ଗୋପବନ୍ଧୋ ।
ଦେଶଂ ନିୟମ୍ୟ ନୟବର୍ତ୍ମନି ଦାନବୀର !
ନେତୃ ପ୍ରବୀଣ ପଦବୀଂ ସମଳଂ କରୋଷି ।୧।

ନୀତ୍ୟା ସମାଚରୟିତୁଂ କରୁଣାବତାର
ବେଦୋକ୍ତ ମନ୍ତ୍ର କଳିତାଂ ଶୁଭରାଜନୀତିଂ
ସଞ୍ଚାରୟନ୍ ଜନହୃଦି ପ୍ରିୟ ଶାନ୍ତି ବାଣୀଂ
ନିତ୍ୟଂ ବିଭାସି ବିବୁଧୈଃ ପରିପୂଜ୍ୟମାନଃ ।୨।

''ଶକ୍ତି ଶିବାୟ'' ନରଲୋକ ମହାର୍ତ୍ତିନାଶୀ
ମନ୍ତ୍ରସ୍ତ ବାମରଗଣାର୍ଚ୍ଚିତ ହେ ଦୟାଳୋ ।
ଘୋର ପ୍ରଗ୍ଣର ବିଷସାଗର ଘୂର୍ଣ୍ଣି ମଧ୍ୟେ
ରକ୍ଷତ୍ୱିବେଶ ଚରଣାମ୍ବୁଜଦୀର୍ଘନୌକା ।୩।

ସର୍ବେ ଭବନ୍ତୁ ଜଡ଼ବାଦବିଳାସ ଦୁଷ୍ଟାଃ
ପାପୈର୍ବିନାଶମପି ଗଚ୍ଛତୁ ମର୍ତ୍ତ୍ୟ ଲୋକଃ
ନୀଚେଷ୍ଟ ଯାତୁ ପତନଂ ଭୁବନସ୍ୟ ଭାଗ୍ୟଂ
ତ୍ୱତ୍ ପୁଣ୍ୟ ଜାତ ମମରଂ ସୁଚିରଂ ତଥାପି ।୪।

ଦୁର୍ଦ୍ଦାନ୍ତାରିପ୍ରକୋପାତ୍ ପ୍ରଖର ଖଳ ଭୟାଭ୍ରାୟତାଂ ତେ ଶୁଭ୍ରାଂଶୀଃ
ଶୁଭ୍ରଂ ଶୁଦ୍ଧାମନିନ୍ଦ୍ୟାଂ ଚିରରୁଚିର ବିଭଂ ମାତରଂ ଦେଶରୂପାଂ
ନିତ୍ୟଂ ନିତ୍ୟଂ ତ୍ୱଦନ୍ତଃ ପ୍ରିୟପଦ କମଳାଂ କାନ୍ତିମଚ୍ଛ ତ୍ର ରମ୍ୟାଂ
ଶ୍ରାଦ୍ଧେ ଶ୍ରଦ୍ଧା ନିବଦ୍ଧାସ୍ତ୍ୱ ଦନୁଗତଧିୟୋ ଗୋପବନ୍ଧୋ ପ୍ରସୀଦ ।

---

# ପୁଣି ତୁମେ ଜନ୍ମ ନଅ

କେନାମଣି ଲକ୍ଷ୍ମୀକାନ୍ତ

ଆଜି ଆହେ  ଦୀନବନ୍ଧୁ !
ଶ୍ମଶ୍ରୁଧାରୀ ହାତେ ନେଇ ଝୁଲି
ପୁଣି ତୁମେ ଜନ୍ମନିଅ ଜନ୍ମ ନିଅ ପୁଣି
ଅଭିଶପ୍ତ  ଏ  ମାଟିରେ
ହେ  ଉତ୍କଳମଣି  !

ତୁମେ  ଆଜି  ଖୋଜାପଡ଼
ଆସି ଥରେ ଦେଖି ଯାଅ ଖାଲି
ସ୍ନେହର ଦୁର୍ଭିକ୍ଷଗ୍ରସ୍ତ, ଓଡ଼ିଶାର
ପୁରପଲ୍ଲୀ ବନ୍ୟାଞ୍ଚଳ ବୁଲି
(ସ୍ୱର୍ଗରେ ମଣିଷ ପାରେ ନା ବଞ୍ଚି)
ବଞ୍ଚେ ଖାଲି ଏ ମାଟିରେ ଜୀଇ ତେଣୁ
ଏଇ ପାଣି ପବନରେ ଘୁରି ଅବିରତ
ସତର-ଛ-ଉଣେଇଶ୍ ଅଠେଇଶି
ପୁରୁଣା ହେଲଣି ସତ .
ତମକୁ ଝୁରୁଛି ଏବେ ସାଥୀ
ବଡ଼ଦାଣ୍ଡ ନନ୍ଦୀଘୋଷ ରଥ

ଉନ୍ନିଦ୍ର ଏ ଜାତି ଆଜି ଖୋଜୁଅଛି
ତମଭଳି ସୁଯୋଗ୍ୟ ସାରଥୀ
ସତ୍ୟବାଦୀ ଛୁରୀଅନା ବଣ ଆଉ
ଏଇ ମାଟି ଝୁରୁଅଛି ଆଜି
ମହାନଦୀ ଉଥଳ ହେଉଛି ଖୋଜି
ତା' ପାଣିରେ ବ୍ୟଥାଭରା ଲୁହ ନିରବଧି

ତୁମେ ଏତେ ଆପଣାର ହୋଇ
ଏ ଜାତିକୁ ଛାଡ଼ି ଯାଇ ପାର..
ଏ କଥା ବୁଝୁନି ମନ ଯଦିଓ ବା
ଅଶଗୃଷ ବର୍ଷ ଭିତରେ ବି

ତମ ପାଇଁ କିଛି ହେଲେ କରି ନାହୁଁ
କଣାଏ ବା କଉଡ଼ିର
ଆମେ ସତେ କେତେ ଯେ କୃତଘ୍ନ
ତାରିଫ ତ କରିନୁ କେବେ
ବରଂ କରିଅଛୁ ତୁମ ନିନ୍ଦା ଗାନ
ତା' ସତ୍ତ୍ୱେ ବି କ୍ଷମା ଦେଇ
ମଣିଷକୁ ଜନ୍ମ ଦିଅ ହେ ଦାସେ ଆପଣେ
କପିଳ ବସ୍ତୁରେ ନୁହେଁ
ଓଡ଼ିଶାର କପିଳେଶ୍ୱରରେ
ଯା' ସ୍ନେହର ସିଂହଦ୍ୱାର
ରହିଥାଉ ସର୍ବଦା ସାହାଣ ମେଲ
ଯାହାର ସବୁଜ ଓଠେ ଫୁଟି ଉଠୁ
ଶ୍ୟାମ ଶସ୍ୟ ଏବଂ ।
ପୁଣ୍ୟୋଚ୍ଛ୍ୱାସେ ଭରିଉଠୁ
ତୁମ ଉଗ୍ର ଜାତୀୟତା ସ୍ୱର
କପାଳରେ ପ୍ରଜ୍ଞା ଜଳୁ
ନୟନେ କରୁଣା ସହ ପୀୟୁଷ ଅପାର
ତୁମରି ଐଶ୍ୱର୍ଯ୍ୟ ଦେଇ ସଂକଟରୁ
ଏ ଜାତିକୁ ପୁଣି ପାରିକର
ତ୍ୟାଗ ନିଷ୍ଠା ସେବାର ମାହାର୍ଦ୍ଦ ଦେଇ
ଜାଗୃତିରେ କର ବୃହତ୍ତର
ଅନିର୍ବାଣ ଦୀପ ଶିଖା ସମ
ହେ ଉତ୍କଳମଣି
ଆମକୁ ବି ଆଲୋକିତ କର ।

---

# ମୁକ୍ତି ମଧୁର କବିତା

ପ୍ରବୋଧକୁମାର ମଶ୍ର

( ୧ )

ଜାତେର୍ମୁକ୍ତୌ ନୀରଜ ସଧିୟା କୃତଙ୍କ ସାଧିତଂ ବା
ମାତୁର୍ଭୂମେରମଳ  କୁସୁମ । ସ୍ଫୀତ—କୀର୍ତ୍ତି ପ୍ରସନ୍ନ
ସତ୍ୟ ସ୍ନାତା ତବ ସୁକବିତା ଭବ ପାୟୁଷ—ସାରୈଃ
ଶଶ୍ୱଚିତ୍ତେ ଜନୟତି ମୁଦଂ ମଞ୍ଜୁଳା ସା ମହାର୍ହା ।।

( ୨ )

ହେ ତେଜସ୍ୱିନ୍ । ସୁମଧୁରମୟୀ ଲେଖନୀ ତେ ନମସ୍ୟା,
କାରାଗୀତି ସ୍ତବ ସୁଲଳିତା ଲେଳିତା ମୁକ୍ତି—ମନ୍ତ୍ରୈଃ
ଜାତେବ ପ୍ରାଣେଷ୍ୱନି ଶମତୁଳାଂ ଜାଗରଂ ଯା ତନୋତି,
ତ୍ୱତ୍ ସମ୍ପର୍କାତ୍  ସରସମଳୟଃ ସାର୍ଥନାମ ବଭୂବ ।।

( ୩ )

ହେ ବାସନ୍ତୀ—ସୁରଭି ରସିକ । ସ୍ପଷ୍ଟ ମୁଦ୍‌ଗୀର୍ଣ୍ଣ ତେଜଃ
ସ୍ୱାଗମ୍ୟାଶ୍ରୁ ପ୍ରଥିତ କବିତା ପୁଷ୍ପକୈଃ ମାଧବଂ ତମ୍
ବୃନ୍ଦୋ ବର୍ଦ୍ଧୈର୍ନ ଜନୟନଜୈର ଶୁଭିରର୍ଚ୍ଚ ୟନତ
ମାତୁର୍ମୁକ୍ତୌ ନୟନ—ବିଧୁରଂ ପ୍ରାର୍ଥନା ମୁଚ୍ଚରସ୍ୱ ।।

(ଶ୍ରବଣ କବିର ଗାନ)

( କ )

ଏଇ ମୋ ଜାତିର ମୁକ୍ତିଲାଗି
ଉଠିଥିଲ ଜାଗି ମୁକ୍ତିଦାତା
ଜନ୍ମଭୂମିର ଅମଳିନ ଫୁଲ
ଉନ୍ନତ ତମ କୀର୍ତ୍ତିଗାଥା
ଚିର ସୁନ୍ଦର ସେଇ ସୁକବିତା ଝଙ୍କାର
ଭବ ଅମୃତେ ଜନ ମନେ ଦିନେ
ଆଣିଦେଲ ଶତ ସୀହ୍କାର

( ଖ )

ତୁମରି ମଧୁର ଲେଖନୀ ବନ୍ୟା
ବରଣୀୟ ଏଇ ଜାତିର,
ସେ କାବ୍ୟ-କବିତା ମୁଗ୍‌ଧ ସବିତା
(ନାହିଁ) ଇତିହାସ କେତେ ଛାତିର ।
ମୋ ଜାତି-ପଗଣେ ଜାଗୃତି ଦେଲ ସେଇରେ
ତମର ପରଶେ ମଳୟ ସମୀର
ସାର୍ଥକ ନାମ ବହିରେ ।

( ଗ )

ବସନ୍ତ ହେ ରସିକ ! ଗାଇଲ
ସ୍ୱାଗତ ଜଣାଇ ତାହାରେ ।।
ସଲୀଳ—ଛନ୍ଦେ କହିଲ ମନ୍ଦେ
ଏ ଜାତିର କିଏ ସାହାରେ
ନିଜ-ନୟନର ଅଶ୍ରୁରେ ରଚି ଅର୍ଚ୍ଚନା
ଜନ୍ମ ଭୂମିର ଶର୍ମ—ବିଧାନେ
ସୃଜିଲ କବିତା ମୂର୍ଚ୍ଛନା

( ଘ )

ହେ ମୋର ଜାତିର ଦଧୀଚି କଳ୍ପ !
ହାଡ଼ ମାଉଁସକୁ ପଳପଳ
ଏ ଜାତି ପ୍ରଗତି ଅୟନେ ଥାପିଲ
(ଆଦି) ତମରି ମୂରତି ଢ଼ଳ ଢ଼ଳ ।
ବନ୍ୟା ବାତ୍ୟା—ମରୁଡ଼ି ଘଙ୍ଗେ ମେରୁହାଡ଼
କୋଟିକ ଭିତରେ ଗୋଟିଏ ତ ଥିଲ
(ଆଜି) ଦୈନ୍ୟ ଦେଉଚି କଶାମାଡ଼ ।

( ଙ )

ମଳୟର ପାଖେ ଗାଇଲ କବି ହେ
ମୋ ଜାତି ବେଦନା ସଙ୍ଗୀତ
ଜଗତନାଥରେ ମିନତି ରଚିଲ
ଦେବାକୁ ନବୀନ—ଇଂଗିତ ।
ଆଜିର ସେବକ ଦୃପ୍ତିଦୀପ୍ତ ଅନ୍ତର
ଭରିଦିଅ ବାରେ ଗୋପବନ୍ଧୁ ହେ
ମଣିଷ ପୀରତି ମନ୍ତର ।

( ଚ )

ତୁମେ ଉଠାଇଲ ଏ ମଡ଼ା ଜାତିରେ
ସଭିଏଁ ଉଠିଲେ ଚେଇଁ ।
ଗୁହିଁବା ବେଳକୁ ଦଳିତ ବନ୍ଧୁ
ତୁମେତ ପଡ଼ିଲ ଶୋଇ
ଗୋପବନ୍ଧୁ ହେ ! ଆଉ କି ଜାଣିବ ନାହିଁ ?
ମରୁଡ଼ି ଡ଼ାକୁଚି କଂକାଳ କୋଳୁଁ
ଶିଶୁ ହସ ଦିଶେ ତହିଁ ।।

( ଛ )

ନିଜ ଜୀବନକୁ ତିଳ ତିଳ କଲ
ମଣିଷେ ପାଇଲ ଭଲ ।
ଆଜି ଦୁନିଆଁରେ ମଣିଷେ ମଣିଷ
କରେ କେତେ କଲବଲ
ପ୍ରତିଭ ଭଜୁଚି ଦୈନ୍ୟ–ଅୟନେ ବିଲୟ
ଗାଅ ମୋ ଜାତିର ଅମର କବିତା
ଅର୍ଦ୍ଧିଣ ବାରେ ମଳୟ ।।

( ଜ )

ତୁମ୍ଭ ଲଗି ଆଜି ରଖିଚି କବି ହେ
ନୟନ ଅଶ୍ରୁ ସାର,
ମୁଖେ ସଞ୍ଚିତ ହତାଶାର ଗୀତା
ହୃଦୟ ବେଦନା ଝର
ନତଶିରେ ଆଜି ରଚୁଚି ନମସ୍କାର
ଗୋପବନ୍ଧୁ ହେ ! ଶରଶେଯ ଛାଡ଼ି
(ଆଜି) ଜାତିର ପ୍ରଗତି ଅୟନେ ଅନ୍ଧକାର ।।

---

# ଦେଖିଲି ତୁମକୁ ଲୋତକ ଜଳେ

ମୁରଲୀଧର ମଲ୍ଲିକ

ତୁମ ଢ଼ଳ ଢ଼ଳ ବଦନ କମଳ ଦେଖିବି ବୋଲି
ସାର ଓଡ଼ିଶାଟା ଅଇଲି ବୁଲି
ଶୁଣିଲି ଖାଲି
ସିଏ ଦିନେ ଥିଲେ ଗଲେଣି ଚାଲି ।

ସାଗର ବାଲିରେ ଗିରି ବନାନୀରେ ତଟିନୀ ତଟେ
କଳତାନେ ଯହିଁ ଲହରୀ ଛୁଟେ
ଗଲି ସେ ବାଟେ
ପୁରୀ କୋଣାରକ ତୀର୍ଥ ପୀଠେ ।।

ସହରକୁ ବୁଲି ଯାଇଥିବ ବୋଲି ଭବିଲି ମନେ
ଶିଥିଳ ଚରଣ ବିକଳ ମନେ
ଗଲି ସେ ଥାନେ
''ନାହିଁ ନାହିଁ କିଏ କହିଲା କାନେ

ପ୍ରଗତିର ତାଳେ ନବଉଚ୍ଛଳେ ଦେଖିଲି ବାଟେ
ହର୍ମ୍ୟ ଉପରେ ହାର୍ମ୍ୟ ଉଠେ
ମାନସ ପଟେ
ନିତି ନିତି ନବ ଭବ ପ୍ରକଟେ

ପଥର ପଥୁକୀ ଗଲାବେଳେ ଡ଼ାକି କହିଲା ତହିଁ
ଚିଲିକା ଜଳରେ ଗଲେଣି ଧୋଇ
ଓଡ଼ିଶା ଭୂଇଁ
ତାଙ୍କ ମୁଖୁଁ ଶୁଣି ଅଇଲି ଧାଇଁ

ବୃକ୍ଷର ମୂଳେ ଅଶ୍ରୁ ସଜଳେ ଦେଖେଢ଼େ ବସି
ବାସ ଗୋଟି ତା'ର ଯାଉଛି ଖସି
ମନ ଉଦାସୀ
ଆପଣା ଭୂଇଁରେ ସେ କି ପ୍ରବାସୀ ?

ତିନିଦିନ କାଳ ମିଳିନି ଆହାର ଟେକିଲ ମୁଖେ
ଶିଶୁଟିଏ  କାହିଁ ମାଆକୁ ଡ଼ାକେ
ଶୁଖିଲ ବୁକେ
ବିଧୁର ଜନନୀ ତା' ମୁଖ ଜାକେ

ଏ ବେଳେକେ ଦୂରେ ଆସୁଥିଲେ ଧୀରେ ସାଥୀ ଗହଣେ
ତୁମ ଜୟଗାନ ବାଜିଲ କାନେ
ଚାହିଁଲି ତେଣେ
ଅବସାଦ ଭରା  ଗଉରଘନନେ ।

ନିରଶ ଆର୍ତ୍ତ ଜନତା, ତପ୍ତ ଜଠରନଳେ
ତୁମ କରୁଣାକୁ କର ପ୍ରସାରେ
ସେଇଠି ଡ଼ୋଳେ
ଦେଖିଲି ତୁମକୁ ଲୋତକ ଜଳେ ॥

---

# ହେ ସୂର୍ଯ୍ୟ ! ପ୍ରଣାମ ନଅ

ଅପୂର୍ବରଞ୍ଜନ ରାୟ

ସେ ସୂର୍ଯ୍ୟର ଅସ୍ତ ନାହିଁ, ସେ ସୂର୍ଯ୍ୟତ ସ୍ମରଣୀୟ
ସମ୍ମାନୀୟ ଜୀବନର ପ୍ରତିଟି ପୃଷ୍ଠାରେ,
ସେ ସୂର୍ଯ୍ୟର ଅସରତା' ଗତ କଥା, ଅସଂଖ୍ୟ ତା କାହାଣୀର
ଅମର ଅଧ୍ୟାୟ
ଲେଖାହୁଏ ଶତାବ୍ଦୀ ବୁକୁରେ ।
ସେ ସୂର୍ଯ୍ୟ କି ମରିପାରେ, ମରଣ ଯେ ପରାଜିତ, ତା' ଯାତ୍ରା ପଥରେ,
ଯା' ପାଦେ ଜଗତ ଢାଳେ ଭକ୍ତିଭରେ କୋଟିଏ ପ୍ରଣାମ
ଯେ ଫୁଲ ହଜେ ନା କେବେ ଏ ଜଗତ ହୃଦୟ କନ୍ଦାଇ,
ଯେ ଫୁଲ ସୁବାସ ଦିଏ ପ୍ରତିଦିନ ପ୍ରତିମୂର୍ତ୍ତି ପ୍ରତି ଲଗ୍ନ
ଝରିପଡ଼ି ଏ ଭୂଇଁର ପରେ
ଯତନେ ସେନେହ ଢ଼ାଳି ମାଳାକାର ଗୋଟାଏ ତାହାକୁ
କୋଟି କୋଟି ଝଡ଼ାଫୁଲ ପାଦେ ଦଳି ଗୋଟିକର ମୂଲ ସିଏ କଳି
ଯେ କାହାକୁ କହେନା ପ୍ରଣତି ପାଇଁ, ଲୋଡ଼େନା ବି ଗୋଟିଏ ପ୍ରଣତି,
ସେ ପାଏତ ଆଜି ବିଶ୍ୱ ପରେ ଅସୁମାରି ଭକ୍ତିର ପ୍ରଣାମ
ଯେ ଗୁହଁନି ବନ୍ଦନା ତା' ଗାନ ପାଇଁ
ଦୁନିଆରେ ସିଏ ଆଜି ଚିର ବନ୍ଦନୀୟ

ଯେ କାହାର ଆଶୀଷ ମାଗେନା କେବେ
ମମତା ବି କରିନି ତ ଦାବୀ
ତାହା ପାଇଁ ଢାଳିଦିଏ ଏଇ ବିଶ୍ୱ ଅସରନ୍ତି ଆଶୀଷ ଓ ମମତାର ବାରି
ସମୁଦ୍ରକୁ କେ' କଳିବ ପରିଚୟ ଦେବ ବା କେ' ତା'ର
ସେ ନିଜେଇ ନିଜ୍ ପରିଚୟ, ପଟାନ୍ତର ନାହିଁ ଜୀବନର

ସାଧକକୁ ପରିଚିତ କେ' ପାରେନା କରି
ସାଧନା ତା' ଅକ୍ଷୟ କୀରତି—ସ୍ମୃତିର ସୁରଭି ।
ଭୁଲିପାରେ ନିଜକୁ ଯେ, ଭୁଲି ସବୁ ଆତ୍ମୀୟ ସୋଦର,
କରିପାରେ ଆପଣାର ଏ ଜଗତ, ସିଏ ପରା ଗୋପବନ୍ଧୁ ଦୀନଜନ ବନ୍ଧୁ
ସିଏ ପରା ମହାଜନ, ଜୀବନ ପୁରୁଷ

କାମନା ବାସନା ଯିଏ ହଜାଇଛି ତା' ଦୀନ କୁଟୀର କରି
ଆଦରେ ସେ ବାସ,
ସେ ପାଏତ ସିଂହାସନ ଏ ବିଶ୍ୱର, ସିଏ ବିଶ୍ୱମଣି
ଏ ଦେଶର ମାଟି ପରେ ନିଜ ଦେହ ମିଶାଇ ଯେ ପାରେ
ତା' ପିଠିରେ ଦେଶ ପାଇଁ ପଥ ପାରେ ଗଢ଼ି,
ଏ ମଣିଷ ଜାତି ପାଇଁ ମରିବାକୁ ଯେ ଶିଖାଏ
ସେ ମରଣ ମହତ୍ୱ ଚଖାଇ
ତା' ପ୍ରେରଣା ତା' ସାଧନା ଜୀଇ ରହୁ ଯୁଗ ଯୁଗ ପାଇଁ

ହେ ସୂର୍ଯ୍ୟ, ପ୍ରଣାମ ନିଅ
ଅସ୍ତମିତ ହୁଏ ନାହିଁ ଯିଏ
ହେ ସୂର୍ଯ୍ୟ ଆଶୀଷ ଢ଼ାଳ, ଏ ଜାତିତ ଜଳି ଜଳି
ଆଲୋକିତ କରୁ ବିଶ୍ୱମୁଖ
ତୁମେ ଦେଲେ ଦିଅ ଗୋପ ଅଭିଶାପ ଆଜି ଏ ଜାତିକୁ
ପୂଜା ଅର୍ଘ୍ୟ ବାଢ଼ୁଛୁତ ବାଢ଼ିବୁ ବି
ଆମେ ସଦ୍ୟ ତୋରଣ ସଜାଇ ।

---

# ହଜିଲା 'ମଣି'

କ୍ଷୀରୋଦଚନ୍ଦ୍ର ଗୋଆଲ

ବୁଲିଲି ନଗରଠାରୁ ଗ୍ରାମ ଯାଏ
ଜନ ପଦେ ପଦ ଗୁଳି
ଖୋଜିଲି କେତେ ମୋ ହଜିଲା 'ମଣି'କି
ନୟନୁ ଲୋତକ ଢାଳି ।

କାହିଁ ନ ପାଇଲି ମଣିର ସନ୍ଧାନ
ନିରାଶରେ ଆସୁ ଫେରି
ଦେଖିଲି ଶ୍ରୀକ୍ଷେତ୍ରେ ପ୍ରଭୁ ଜଗନ୍ନାଥ
ରଥେ ଛନ୍ତି ବିଜେ କରି ।

ବସିଛନ୍ତି ପୁଣି ଭାଇ ହଳପାଣି
ସୁଭଦ୍ରା ଭଗିନୀ ସାଥେ
ପୁଛିଲି "ହେ ଦେବ ! ତୁମେ ଦେଖିଥିବ
"ମଣିଟିକି" ମୋର ସତେ ।

ପ୍ରଭୁ ଦାମୋଦର ଭାଷିଲେ ଉତ୍ତର
ତୁମରି ହଜିଲା ମଣି
ବିରାଜୁଛି ଦେଖ ସକଳ ହୃଦୟେ
ବୋଲାଇ "ଉତ୍କଳମଣି" ।

---

# ଗରିବର ଭଗବାନ

ବଟକୃଷ୍ଣ ଓଝା

ସାଇକେଲଟିଏ କିଣିବ ଅନନ୍ତ
          ସଞ୍ଚିଲାଣି କିଛି ଧନ
ଏ କଥା ଜାଣିଲେ ଗୋପବନ୍ଧୁ ବାବୁ
          ଅଥିର ହୋଇଲା ମନ ।

କଉଶଳ କରି ଉଧାର ମାଗିଲେ
          ଜମା ଥିବା ସେହି ଟଙ୍କା
ଟଙ୍କା ପୁଡ଼ା ଆଣି ଥୋଇଲେ ଅନନ୍ତ
          ଦୂର ହେଲା ମନୁ ଶଙ୍କା ।

ଦିନେ ନୁହେଁ ମାସ ବରଷ ବିତିଲା
          ସବୁ କଥା ଜାଣି ଶୁଣି
ଗୋପବନ୍ଧୁ ବାବୁ ଦେଲେ ନାହିଁ ଟଙ୍କା
          ଅନନ୍ତ ହୋଇଲେ ଗୁଣି ।

ଦୂର ଗାଆଁ ବାଟ କିପରି ଯିବି ମୁଁ
          ମନରେ ବସିଲେ ଭାଳି
ବହୁତ ଦିନରୁ ଥକି ପଡ଼ିଲିଣି
          ପାଦରେ ମୁଁ ଚାଲି ଚାଲି ।

ସାଇକେଲ ହେଲେ ସହଜ ହୁଅନ୍ତା
          ବହୁତ ପାରନ୍ତି ବୁଲି
ଉଧାଇ ନେଇ ସେ ଫେରାଇ ଦିଅନ୍ତି
          ମୋ କଥା କି ଗଲେ ଭୁଲି ?

ବହୁ ଭାବିଚିନ୍ତି ବେଳ କାଳ ଉଣ୍ଡି
          କହିଲେ ମନର କଥା
ଗୋପବନ୍ଧୁ ବାବୁ ସବୁ ଶୁଣି ଶୁଣି
          ହସିଲେ ହଲାଇ ମଥା ।

"ତୁମ ଟଙ୍କା କଥା ଅଛି ମୋର ମନେ
ଦେଉ ନାହିଁ ଜାଣି ଟାଣି
ଯଦି ମୋର କଥା ରଖିବ ଅନନ୍ତ
ଏହିକ୍ଷଣି ଦେବି ଆଣି ।

ପାଣି କାଦୁଅରେ ଘର ଘର ବୁଲି
ଅପନ୍ତରା ବାଟ ଦେଇ
ପାଦେ ଗ୍ଲି ଗ୍ଲି ଭେକିଲ୍ ଲୋକର
ଖବର ଫେରୁଛ ନେଇ ।

ସାଇକେଲ ହେଲେ ସଡ଼କ ବାଟରେ
ସୁବିଧାରେ ଯିବ ଗ୍ଲି
ଅଭାବ କେଉଁଠି କିପରି ଜାଣିବ
କହିଲ ମନରେ ଭଲି ?

ପଙ୍କ କାଦଅରେ ଆଉ କି ପଶିବ
ଦେଖିବ ଗରିବ ମୁହଁ
ବରଷା ବର୍ଷିରେ କିଏ ପୋଛି ଦେବ
ଦୁଃଖୀ, ରଙ୍କୀ, ଆଖି ଲୁହ ।

ଟଙ୍କା ନେଇପାର, ସାଇକେଲ କିଣା
ମନୁ କରିଦିଅ ଦୂର
ଗରିବର ସେବା ଯେଉଁଠି କରୁଛ,
ସେଇଠି ସରଗପୁର ।

ମଣି ମୁକୁତାର ଝଲକରୁ ବଳି
ଗରିବର ଧାରେ ହସ,
ସେ ହସରୁ ମିଳେ ପରମ ଆନନ୍ଦ
ଦେବତା ହୁଅନ୍ତି ବଶ ।"

---

# ମାଟି କୋଣାର୍କ

ପ୍ରସନ୍ନ ମିଶ୍ର ( ମୌସୁମୀ )

ଯେ କୋଣାର୍କ ତିଆରିଲ ସ୍ରଷ୍ଟା ଆହେ
ଲହୁଲୁହ ଦେହ ବିନିମୟେ
ସେ କୋଣାର୍କ ଭଗ୍ନ ସ୍ତୁପ, ମାଟିଗଦା
ଏ କାଳର କରାଳ ହୃଦୟେ ।

କିବା ସ୍ୱପ୍ନେ ତୋଳିଥିଲ ସ୍ନେହ ଦେଇ
କାମନାର ପ୍ରଦୀପ ଲିଭାଇ
ବାସନାର ମିଛ ସ୍ୱପ୍ନ ଦୂରେ ଠେଲି
ତୁମେ କିମ୍ବା ପଡ଼ିଲ ଘୁମାଇ ।

ମମତାର ପିଆଲାରେ ଭରିଗଲ
ଦୀନ ପାଇଁ ପ୍ରେମର ମଦିରା
ଲୁହର ବଣିକ କଣ୍ଠେ ସୁର ଦେଇ
ତାରେ କଲ ମୁକ୍ତ ଓ ଅଧୀର ।

ଲେଖନୀରେ ଭରି ଦେଲ ଦେଶ ପ୍ରେମ
ଗୋପବନ୍ଧୁ ! ହେ କବି କୋକିଳ
ଏ ମାଟି କୋଣାର୍କ ଛାତ ବିଳପୁଛି
ବିଳପୁଛି ସେ ବନ-ବକୁଳ... ।

---

# ଅମର ସିଏ

ଅଚ୍ୟୁତାନନ୍ଦ କର

ମୁଁ ଭେଟିଲି ତାକୁ ଦିନେ କଲିକତି କୁଲି ସଙ୍ଗେ ସିଏ ଆସିଥିଲା
ଚଟକଳ ଚିମିନିର ଧୂଆଁ ଦେଇ ଓଠ ତାର ଦିଶଥିଲା କଳା
ଝାଳରେ ମଇଳା ମିଶି ସାଘ ଦେହେ ଲଗିଥିଲା ହୋଇ ଘୁଳା ଘୁଳା
ଯାଇତାଇ ବଞ୍ଚିବାକୁ ଶୀର୍ଣ୍ଣ ହାତେ ଟାଣୁଥିଲା ତା ଜୀବନ ଭେଳା ।

ମୁଁ ତାକୁ ଭେଟିଲି ଦିନେ ଖଗଟାରେ ହଳଧରି ଚଷଥିଲା ସିଏ
ମଥାରୁ ଗରମ ପାଣି ଛାତି ଦେଇ ଝଡ଼ୁଥିଲା, ଦେଖିଛ କି କିଏ ?
ରୁକ୍ଷ ମରୁଭୂମି ପରି ରୁଗ୍‌ଣ ଆଖି ଲଢ଼ୁଥିଲା ସୂର୍ଯ୍ୟ ସହିତରେ
ବଞ୍ଚିବାକୁ ଗ୍ରହୁଁଥିଲା ଦମ୍ଭ ଧରି ଠିଆ ହୋଇ ମୃତ୍ୟୁ ବୋଇତରେ

ମୁଁ ତାକୁ ଭେଟିଲି ଦିନେ ଲୁହାଖଣି ଫାଡ଼ୁଥିଲା ତା' ହାତ କୋଦାଳ
ଲୁହା ସଙ୍ଗେ ଲଢ଼ି ଲଢ଼ି ଛାତି ହାଡ଼ ଦିଶୁଥିଲା ପଦାକୁ ଦୁର୍ବଳ
ପଥରେ ଆଘାତ ପାଇ ପାଦୁ ତା'ର ଝରୁଥିଲା ମଉଳା ଗୋଲପ
ଆଖିରେ ସେ ଦେଖୁଥିଲା ଦିକ୍‌ଦିକ୍ ଜଳୁଥିବା ଜୀବନର ଦୀପ ।

ମୁଁ ତାକୁ ଭେଟିଲି ଦିନେ କଣ୍ଠ ଖୋଲି ଦେଉଥିଲା ସେ ବ୍ୟର୍ଥ ଡାକଗ
"ଓଡ଼ିଆ ଓଡ଼ିଆ" କହି ବୁଲୁଥିଲା ମଞ୍ଜୁଷାରୁ ଟିକାବାଲି ସାଗ
କୋଣାରକ ପଥରର ଅଣୁ ଦେହେ ବେଣୁ ତାର କରୁଣ ରାଗିଣୀ
ତୋଳୁଥିଲା, ଖଣ୍ଡଗିରି ଗୁଂଫା ଭେଦି ଶୁଭୁଥିଲା ବାଣୀ ।

ବନ୍ୟାର ଉଚ୍ଛୁଳା ଜଳେ ଜଳୁଥିଲା ଘସମାନ ଏକ ବତୀ ହୋଇ
ବାତ୍ୟାର କରାଳ ଛାତି ମଞ୍ଚି ଦେଇ ଗ୍ରହୁଁଥିଲା ଯିବାକୁ ଆଗେଇ
"କାରାର କବିତା" ପଢ଼ି ସଂଗ୍ରାମର ମାଟି ଦେହେ ଢାଳୁଥିଲା ଲହୁ
କାଠର ମୂରତି ସାଜି ନିଜ ନାମ ଦେଇଥିଲା ନିଜେ ମହାବାହୁ ।

ମୁଁ ଭେଟିଲି ତାକୁ ଏଇ ଓଡ଼ିଶାର ମାଟି ପାଣି ପବନ ଭିତରେ
କଲିକତା ଚଟକଳେ, ମଫସଲ ଗ୍ରଷ ବିଲେ କାଦୁଅ କ୍ଷେତରେ
ରାଉରକେଲାର ସେହି କୁଲି ବସ୍ତି, ଦୁର୍ଗାପୁର ଭଳି ଅଞ୍ଚଳରେ
ଅନ୍ଧକାର କିଟି କିଟି ବାୟୁହୀନ କେଉଁ ଏକ କୋଇଲା ଖଣିରେ ।

ମୁଁ ପୁଣି ଭେଟିଲି ତାକୁ ବନ୍ୟା ବେଳେ ବାତ୍ୟା ବେଳେ ମରୁଡ଼ି କାଳରେ
ବିଚ୍ଛିନ୍ନାଞ୍ଚଳର କେତେ ଗାଁ ଗଣ୍ଡା ବନଗିରି ଓଡ଼ିଆ ମେଳରେ
କୋଣାରକ ସମ୍ମୁଖରେ, ବାଇଶି ପାହାଚ ଶେଷ ରତ୍ନବେଦୀ ପରେ
ବାରମ୍ବାର ଭେଟାଭେଟି ହେଉଅଛୁ ପ୍ରତି ମୁହୂର୍ତ୍ତରେ, ଆଉ ସବୁ ସମୟରେ

ଯାହାକୁ ଭେଟୁଛି ଯହିଁ, ସେହି ପଥ ମୋ ଜାତିର ଜାତୀୟ ସଂକେତ
ଉତ୍କଳର ମଣି ସିଏ, ତା କଣ୍ଠର ଶ୍ରମ ଗୀତ ଭାରତ ଝଙ୍କୃତ
ଉତ୍କଳୀୟ ଗୋପବନ୍ଧୁ ଭାରତୀୟ ବିଶ୍ୱରୂପ ନେଇଅଛି ବରି
ଭାରତର ଚତୁର୍ଦ୍ଦିଗେ ବାଜେ ଆଜି ତା' କର୍ମର ସିଙ୍ଗା ଆଉ ଭେରୀ ।

କୋଟି କୋଟି ଗୋପବନ୍ଧୁ ନିତି ହୁଏ ଦେଖା
ମରି ବି ଅମର ସିଏ, କୋଟି ପ୍ରାଣେ ମିଳିଅଛି ତା' ଜୀବନ ଶିଖା ।

---

# ଆବାହନ---

ଡାକ୍ତର ଗଗନ ମିଶ୍ର

ତୁମର ଶୁଖୁଲ ହସ, ତୀକ୍ଷ୍ଣ ଆଖି,
ନିର୍ଭୀକତା, ତ୍ୟାଗର ପ୍ରକାଶ;
ଅର୍ଦ୍ଧେକ ଶତାବ୍ଦୀ ପରେ, ଏବେ ସୁଦ୍ଧା
କଥା କହେ, ଗୋପବନ୍ଧୁ ଦାସ !
ତୁମେ ତ ନ ଥିଲ ଖାଲି, କଣ୍ଠ ଭରି
କରିବାକୁ ଆହତ ଚିତ୍କାର,
ନତୁବା ନ ଥିଲ ତୁମେ, ପଙ୍ଗୁ ପରି
ଢାଳିବାକୁ ଅଶ୍ରୁ ପାରାବାର,
ଜନତାର ଝଡ଼ ତଳେ, ଅବହେଳେ
ମିଶୁଥିଲ ତୁମେ ଗନ୍ଧ ଭଳି,
ଆମୋଦିତ କରୁଥିଲ, ସୁବାସରେ
ପୂତି ଗନ୍ଧ ନରକର ସ୍ଥଳୀ,
ବାହୁ ତୋଳି ପିଇଥିଲ, ଅକୁଣ୍ଠରେ
ଜନତାର ଯେତେ ଦୁଃଖ ରାଶି,
ନିଜକୁ ଆହୁତି ଦେଇ, ସେ ନିଆଁରେ
ଆଲୋକିଲ ଏ ଉତ୍କଳବାସୀ ।

ତୁମେ ଆଜି ଗୋପବନ୍ଧୁ ! ଏ ପବନ
ଏ ସୂର୍ଯ୍ୟର ଗ୍ରନ୍ଥିଳ ଶାଖାରେ,
ବେଳେ ବେଳେ ଘୂରିବୁଲ, ବାଜ ପରି
ଦେଖିବାକୁ ଏଇ ସଭ୍ୟତାରେ;
ନଷ୍ଟଶୀଳ ମଣିଷର ଦେଖିବାକୁ
ଅଗଣିତ ଧ୍ୱଂସ କର୍ମସୂଚୀ,
ଶୁଣି ଶୁଣି ହତବାକ୍, ତୁମ ଆଖି
ଏ ଯୁଗର ପରମାଣୁ କୃତୀ ।
ତୁମେ କିନ୍ତୁ ଡର ନାହିଁ, ଡର ନାହିଁ,
ଦେଶବନ୍ଧୁ, ଗୋପବନ୍ଧୁ ଦାସ !
ଏ ଯୁଗକୁ ବଞ୍ଚାଅ ହେ, ରକ୍ତ ଦେଇ
ଏ ଯେ ଏକ ପ୍ରଳୟ ପ୍ରକାଶ ।

ତୁମେ ଆଜି ଉଡ଼ିଆସ, ପକ୍ଷ ଯୋଚି
ଅବତର ଆମ ଏ ଭୂଇଁରେ,
ତୁମର ସେଠାର କାମ, ବାକିଥାଉ
ଏ ଯେ ବନ୍ଧୁ ଦାଉ ଦାଉ ଜଳେ;
ଜଳିଯାଏ ମଣିଷର, ଅତୀତର
ଯୁଗ ଯୁଗ ମହାର୍ଘ ସଭ୍ୟତା,
ତୁମେ ତ ବଞ୍ଚାଇଥିଲ, ଉତ୍କଳକୁ
ରଖ ଆଜି ପୃଥ୍ୱୀର ଜନତା,
ରକ୍ଷାକର ଜନତାର କୃଷ୍ଟି,

ତୁମ ପାଇଁ ଆଜି ଆମେ, କୋଟି କଣ୍ଠେ
ଆଗମନୀ କରୁଅଛୁ ବୃଷ୍ଟି ।

# ସ୍ମରଣ, ଅନୁସରଣ କର

ଡକ୍ଟର ଜାନକୀବଲ୍ଲଭ ମହାନ୍ତି ( ଭରଦ୍ୱାଜ )

କୀର୍ତ୍ତିମୟୀ ଉତ୍କଳର
ଲୁପ୍ତ କେତେ କୀର୍ତ୍ତି ଗାଥା
ଭଗ୍ନ ଗର୍ଭୁ କୋଣାର୍କର
କୂଳରେ ଢେଉ ପିଟଇ ମଥା ।

ଧ୍ୱସ୍ତ ବହୁ କୀର୍ତ୍ତି ମାଳା
ଭୁବନେଶ୍ୱର ଭଗ୍ନ ପୀଠେ
ଖର୍ବ ଏଇ ଉତ୍କଳର
କରୁଣ ବାଣୀ କଣ୍ଠ ତଟେ ।

ଶିଳ୍ପୀ ମନ ଯାଇଛି ଭଜି
ଧମନୀ ଆଜି ରକ୍ତହୀନ
ଅଧିକତର ହୋଇଛି ହୀନ
ହରାଇ ଗୋପବନ୍ଧୁ ପ୍ରାଣ ।

ସତ୍ୟବାଦୀ ବକୁଳ ବନୁଁ
କରିଗଲ ଯେ ଆଲୋକପାତ
ଉତ୍କଳର ପରାଣ ପ୍ରିୟ
ଲୁଚିଲ ତହିଁ ଅକସ୍ମାତ ।

ସେବାରେ ଜିଣି ରୁଗ୍‌ଣ ମୁଖେ
ଦେଇଥିଲ ଯେ ମଞ୍ଜୁ ଗୀତି
ଦୁର୍ଦ୍ଦିନର ଅନ୍ଧକାରେ
ଜାଳିଥିଲ ଯେ ପୁଣ୍ୟ-ବତୀ ।

ମୂକ ମୁଖରେ ଦେଇଥିଲ ଯେ
ବିପ୍ଳବର ଦୀପ୍ତ ଭଷା
ନିରଶ ମନେ ଆଣିଥିଲ ଯେ'
ଅମୃତର ଶୁଭ୍ର ଆଶା ।

ଉତ୍କଳର ସ୍ୱାଧୀନତାର
ସେ ଭଗୀରଥ ଶାନ୍ତିକାମୀ
ସୁରଧୂନୀର ପ୍ରବାହେ ପୂତ
କରିଛନ୍ତି ଏହି ପୁଣ୍ୟଭୂମି ।

ସ୍ମୃତିଟି ତା'ର ରହିଛି ଖାଲି
ବଞ୍ଚିଛି ଯେ ଅମର ନାମ
ଦୁର୍ଦ୍ଦିନର ବନ୍ଧୁ, ଆଜି
ଉତ୍କଳ କାହିଁ ତାହାରି ସମ ?

ବର୍ଷ କେତେ ଗଲଣି ବିତି
ଶୂନ୍ୟ ଏଇ ପୂଜାର ବେଦୀ
ଆସିନି ଗୋପବନ୍ଧୁ ଆଉ
ସେବାର ଲଗି ତମସା ଭେଦି ।

ନିଅ ହେ ଗୋପବନ୍ଧୁ ଜାତି
ଆଜି ତାହାର ପୁଣ୍ୟ ବ୍ରତ
ସ୍ମରଣ ଅନୁସରଣ କର
କର ତା' ଲଗି ଅଶ୍ରୁପାତ ।

---

# ପୁଣ୍ୟ ଶ୍ଳୋକ

ଦୁର୍ଗାମାଧବ ମିଶ୍ର

( ୧ )

ଅନ୍ନ ନାହିଁ, ବସ୍ତ୍ର ନାହିଁ, ଚତୁର୍ଦ୍ଦିଗେ ଆକୁଳ ଚିତ୍କାର
ଶସ୍ୟାଗାର ଉତ୍କଳରେ ଚାଲେ ନିତି ଚୋର କାରବାର
କଳୁଷିତ ହସ୍ତ, ମନ, ନୀତିହୀନ୍ ହେଲୁଣି ହେ ଆମେ
କିପରି ଚଳିବୁ କୁହ ? ମନ ଆଉ ଲଗେ ନାହିଁ କାମେ ।
ଅନ୍ନଚିନ୍ତା ଚମତ୍କାର, ମୃତ୍ୟୁ ମଧ୍ୟ ଦେଲାଣି ପାଶୋରି
ଏ ଜୀବନେ କେତେ ଦୁଃଖ ! କେତେ ଆଉ ହୋଇବୁ ଘୋଷାରି ?

( ୨ )

ତୁମ ସୌମ୍ୟ ମୁଖେ ଚାହିଁ, ତୁମ ନେତ୍ରେ ଅନାଇ ଅନାଇ
ଯେତେ ଦମ୍ଭ ସଞ୍ଚିଥିଲୁ, ସବୁ ଆଜି ଯାଉଛି ଉଭେଇ
କରୁଣ କାକୁତି ଭରି ତ୍ରାହି, ତ୍ରାହି ଡ଼ାକି ଅହର୍ନିଶ
ଯେ ଦିଗେ ନୟନ ଯାଏ, କ୍ଷମତାର କଳା ଶଙ୍ଖବିଷ
ଉତ୍ପ୍ଲୁତ ସବୁରି ତନୁ; ମର୍ମେ ମର୍ମେ ନିରାଶାର ଗ୍ଳାନି
'କାହାକୁ କହିବୁ ଦୁଃଖ ? କିଏ ଦେବ ଆଶାର ରାଗିଣୀ ।

( ୩ )

ଯାହାକୁ ଆଶ୍ରୟ ପାଇଁ ହାତପାତି ବୁଲୁଁ ଦ୍ୱାରଦ୍ୱାର
ମେରୁଦଣ୍ଡ ହୀନ ସର୍ବେ ସରୀସୃପ, ହୀନ ଦୁରାଚାର
କୁଟା ଖଣ୍ଡେ ଧରି ଧରି ପାରିହେବୁ ତପ୍ତ ବୈତରଣୀ
ସେ ଆଶା ଆକାଶ—ପୁଷ୍ପ, ଶେଷ ଶ୍ୱାସ ଉଠୁଛି ଉଜାଣି
ତୁମେ ଢ଼ାଳ ଆଶୀର୍ବାଦ, ଅବା ତୁମେ ନିଅ ଅବତାର
ଆଜିର ଏ ସଂକଟର ଉତ୍କଳରେ ନାହିଁ ପଟାନ୍ତର

( ୪ )

ଖଦ୍ୟୋତ ଆଲୋକେ ଆଉ ପଡ଼ି ଉଠି ଚାଲିବୁ ବା କେତେ
ଖଦ୍ୟୋତନ ! ଦେଖାଦିଅ ଥରେ ମାତ୍ର ଉଭା ହୋଇ ମର୍ତ୍ତ୍ୟେ
ସୁଶୃଙ୍ଖଳ କର ଦେଶ, ଜନତାରେ ଦିଅ ସଞ୍ଜିବନୀ
ଆମେ ଆଜି ସର୍ବେ ମିଶି ତୁମ ପାଶେ କରୁଛୁ ଦଇନି ।

---

# ଅଭିନୟ

ଭଗବାନ ନାୟକ ବର୍ମା

ସେ କେଉଁ 'ଗୋପ'ର ଦାଣ୍ଡେ
ବୁଲି ବୁଲି କିଏ କେବେ
ଗାଇଥିଲା ପ୍ରେମର ସଙ୍ଗୀତ—
ପରାଧୀନ ମଣିଷର
'ବନ୍ଧୁ' ସାଜି କେବେ କିଏ
ଦେଇଥିଲା ମୁକ୍ତିର ଇଙ୍ଗିତ—
'ସମାଜ'ର 'ଦାସ' ହୋଇ
କିଏ କେବେ କରିଥିଲା
ଭାଗ୍ୟହତ ଜନତାର ସେବା—
ମୋର କିଛି ମନେ ନାହିଁ ।
ପଚାରିଲେ ମୁଁ କହିବି:
କିଏ ଜଣେ ଥିଲେ ଥିବ ଅବା.. !

ମୋର କିବା ଯାଏ ଆସେ....
ମୁଁ କିଆଁ ଘାଣ୍ଟିବି ନିଜ
ଜୀବନର ରିକ୍ତ ଇତିହାସ !
ପଚାରନା ମୋତେ କିଛି ।
ମୁଁ ଜାଣେନା ଥିଲେ କିନା
ଏଠି କେହି 'ଗୋପବନ୍ଧୁ ଦାସ' ! !

---

# ଆଜି ତୁମ ଶ୍ରାଦ୍ଧବାସରେ

ବଂଶୀଧର ମିଶ୍ର

ଉତ୍କଳର ବରପୁତ୍ର
ହେ ଉତ୍କଳମଣି
ତୁମ ଯଶ ତୁମ କୀର୍ତ୍ତି
କିଏ ନାହିଁ ଜାଣି ।

ଦେଶ ସେବା କରି ସାର
ଭୁଲି ନିଜ ପରିବାର
ଗାଆଁ ଗାଆଁ ବୁଲୁଥିଲ ଧରି ଭିକ୍ଷା ମୁଣି ।
ତୁମ ପଦେ ଦେଶବାସୀ ଚିର ଦିନ ଋଣୀ ।୧।

କେତେ ବର୍ଷି, କେତେ ଝଡ଼ି, ଦୁର୍ଭିକ୍ଷ ମରୁଡ଼ି
କେତେ ଆର୍ତ୍ତ ଅନାହାରେ ଛାଡୁଥାନ୍ତି ରଡ଼ି ।
ତୁମେ କିନ୍ତୁ ଗୋପବନ୍ଧୁ
ସତେ ବା ଦୟାର ସିନ୍ଧୁ
ଘର ଘର ବୁଲି କେତେ ବାଣ୍ଟୁଥିଲ ପଡ଼ି ।
ନୟନୁ ଲୋତକ ତୁମ ଯାଉଥିଲା ଗଡ଼ି ।୨।

ବର୍ଷି ଝଡ଼ି କେତେ ଏବେ ଦେଖା ଦିଏ ଆସି
ଗାଆଁ ଗଣ୍ଡା ଘରଦ୍ୱାର ଯାଏ କେତେ ଭସି ।
ଅନାହାରେ କେତେ ଲୋକ
ମରି ଯାନ୍ତି ଯଥା ପୋକ
ଦେଖୁଥିବ ନିଶ୍ଚେ ତୁମେ ସ୍ୱର୍ଗପୁରେ ବସି
କି ଅବସ୍ଥା ଭୋଗୁଛନ୍ତି ତୁମ ଦେଶବାସୀ ।୩।

ଆଜିତ କାହିଁକି ଆଉ ତୁମ ପରି ଜଣେ
ଦେଖା ଯାଉ ନାହିଁ ଏଇ ଦେଶ ଘରକଣେ ।
ଦେଶ ସେବା ବ୍ରତ ଧରି
ତୁମ ପଥ ଅନୁସରି
ଦେଶଟାକୁ ନିଜ ଘର ପରି କାହିଁ ମଣେ ।
ଭୁଲିଲେଣି ତୁମ ସେବା ନୀତି ଜଣେ ଜଣେ ।୪।

ଦେବତା ହେ ! ଆସିଥିଲ ନରରୂପ ଧରି
ଦେଶ ସେବା ବ୍ରତ ଜୀବନରେ ନେଲ ବରି ।
ଶୋଷୀ ତୁଣ୍ଡେ ଦେଇ ଜଳ
ଭୋକୀ ତୁଣ୍ଡେ ଦେଇ ଫଳ
"ବସୁଧୈବ କୁଟୁମ୍ବକ" ନୀତି ଅନୁସରି
ଅବତାର ଶେଷେ ବାହୁଡ଼ିଲ ସ୍ୱର୍ଗପୁରୀ ।୫।

ବରଷକେ ଥରେ ଆଜି ତୁମ ଶ୍ରାଦ୍ଧ ବାସେ
ତୁମରି ପବିତ୍ର ସ୍ମୃତି ଚିତ୍ତପଟେ ଆସେ ।
ତୁମ ଯଶ କରିଗାନ
କରୁ ଆଜି ପିଣ୍ଡଦାନ
ଜଣାଉଁ ପ୍ରଣତି ସର୍ବେ ତୁମ ପଦେ ଶେଷେ
ଦିଅ ହେ ଆଶିଷ ଢ଼ାଳି ରହି ସ୍ୱର୍ଗବାସେ ।୬।

---

# ଗୋପବନ୍ଧୁ ଦାସ

ବୀରକିଶୋର ପାଢ଼ୀ

ତୁମକୁ ମୁଁ ଦେଖିନାହିଁ ପଢ଼ିଛି ମୁଁ ତୁମରି କାହାଣୀ
ତୁମ ଛବି ଲେଖିନାହିଁ ଖୋଜୁଛି ସେ ଅମର ଗୃହାଣୀ ।

ଆଜି ଏହି ଚଲବାଟେ ସମାଜର ସୁଅ ମୁହଁ ତଳେ
ମହାମାରୀ ମଡ଼କରେ ଜୀବନର ଦେବଦାରୁ ଟଳେ ।

ଆଜି ଏଠି ଅନାହାର, ଅନାଗ୍ରର ଅଭବର ଦାଉ
ଏତେବେଳେ ଏ ମାଟିରେ ତୁମଛଡ଼ା କିଏ ଲୋଡ଼ା ଆଉ ?

ତୁମ ବିନା କିଏ ଏଠି ପରଶିବ କରୁଣାର କଣା ?
ତୁମ ବିନା ଆମେ ସବୁ ହୋଇଲୁଣି ଏବେ ବାଟବଣା ।

ତୁମକୁ ପାସୋରି ଆମେ, ମମତାର ସରୁ ସୂତା କାଟି
ମଣିଷକୁ ପର ମଣି ଗ୍ରେରିକଲୁ ତା'ର ଗ୍ରବିକାଠି ।

ନୀତିର ପାଚେରୀ ଡେ଼ଇଁ ଅନୀତିର ମହୁରକୁ ପିଇ
ବଞ୍ଚିବାର ଅଭିନୟ ଆମେ କଲୁ ଖାଲି ଅଧା ଜୀଇ ।

ଦରମଲା ଏ ଜାତିଟା ଆଜି ପୁଣି ମରିମରି ଆସେ
ପାରିବ ବଞ୍ଚାଇ ପଗ ତୁମେ ଏକା ଗୋପବନ୍ଧୁ ଦାସେ ।

---

# ମହାମୟୂଖ

ଅଧ୍ୟାପକ ଚନ୍ଦ୍ରଶେଖର ମହାପାତ୍ର

ତମାଳ--ତାଳୀର ନୀଳବନପୁରେ ଅନ୍ଧକାରେ
ତାହାରି ଜୀବନ ସ୍ପର୍ଦ୍ଧା—ଶିଖା,
ବିମଳ କରୁଣା କିରଣେ ଭରିଲ ସଞ୍ଜିବନୀ
ସଜାଇ ଏ ଭୂଇଁ ସ୍ୱର୍ଣ୍ଣଲେଖା,
ସାଗର ବେଳାରେ ଊର୍ମି ଖେଳାଇ
'ବକୁଳ ବନ''ରେ କାକଳି ଝଗଇ
ଉଲ୍ଲାସେ ଦେଲ ଉଷାର ତୋରଣ ମୁଖର କରି, ସ୍ୱସ୍ତି ଭରି ।

ସେ ମହାମୟୂଖ ପରଶୁ ପୁଣି ଏ ସୁପ୍ତ ଜାତି
ଉଦାସୀ—ରଜନୀ—ତନ୍ଦ୍ରାଭେଦି,
ଛଳନା ବରଣୀ—ଭିନ୍ନ ସରଣୀ ସରଜ ଆଜି
ନୟନେ ଦେଖାଉ ଯଜ୍ଞବେଦୀ
ନିରବଧି ତାର ନୀରବ ସାଧନା
ପ୍ରତି ରଶ୍ମିର ଅଶ୍ରୁ ଯାଚନା
କୋଟିଏ ଜୀବନେ ତିମିର ଲଗନେ ଭରସାମୟ, କଳ୍ପନୀୟ ।

———

# ତିଳତର୍ପଣ

ସୁମନ୍ତକୁମାର କବି

ଆଜି---
ଆସ ଆସ ଦୁଇକୋଟି ଉତ୍କଳ ସନ୍ତାନ
ହାତେ କିଛି ତିଳ ଆଉ ଆଖି କୋଣେ ଲୁହ
ନେଇ ଆସ, ମହୋଦଧି ତୀରେ
କରିବା ତର୍ପଣ ସେଇ ମହାନ୍ ଆତ୍ମାର

ଯିଏ---
ଅହରହ ଢାଳୁଥିଲା ଲୁହ ତୁମ ପାଇଁ
ଆପଣାର ବୋଲି କିଛି ରଖି ଗଲା ନାହିଁ
"ବସୁଧୈବ କୁଟୁମ୍ବକ" ଥିଲା ଯାର ନୀତି
ଦରିଦ୍ରକୁ ନାରାୟଣ ମଣୁଥିଲା ନିତି ।

ସିଏ–
ସବୁ ଦେଇ ତୁମ ପାଇଁ ନିଃସ୍ୱ ବେଶେ ଗଲା
ଏକ ପୁତ୍ର ବଦଳରେ କୋଟିଏ ଆଣିଲା
ମିଶାଇଲା ନିଜ ଦେହ ଏ ଦେଶ ମାଟିରେ
ଚାଲୁଅଛ ପରା ଆଜି ତାହାରି ପିଠିରେ

ତେଣୁ---
ଲୋଡ଼ାନାହିଁ ତା ପାଇଁତ ଶୋକସଭା ଆଜି
ଲୋଡ଼ାନାହିଁ ବକ୍ତୃତାର ମାଳ
ଲୋଡ଼ାନାହିଁ କୁମ୍ଭୀର କାନ୍ଦଣା
ହେ ଉତ୍କଳି !
ଯଦି ଥାଏ ତୁମ ମନେ ତିଳେ ହେଲେ କୃତଜ୍ଞତାବୋଧ

ତେବେ---
ଆସ ଆଜି ବାରେବାରେ ନଗ୍ନପଦେ ମହୋଦଧି ତୀରେ
ହାତେ କିଛି ତିଳ ଆଉ ଆଖି କୋଣେ ଲୁହ–
ନେଇ, କରିବା ତର୍ପଣ ସେଇ ଅମର ଆତ୍ମାର ।

---

# ଦାସେ ଆପଣେ

କାନନବିହାରୀ ଦାଶ

ତୁମେ ଥିଲ ସାର୍ଥକ ଓଡ଼ିଆ
ଏ ଜାତିର ଗତି ଆଉ ମୁକ୍ତି
ଦେଇ ତୁମେ ଜୀବନର ସମସ୍ତ ନିର୍ଯ୍ୟାସ
ପୋଛିଥିଲ ଏ ଦେଶ ଓ ଜାତିର ଦୁର୍ଗତି

\+ \+ \+

ଆଜିବି ଓଡ଼ିଆ କାନ୍ଦେ
ନ ଲେଉଟେ ଜିଭ ତାର ଓଡ଼ିଆ ଭାଷାରେ
କାଟିଛନ୍ତି ଜିଭ ତା'ର ପଡ଼ୋଶୀଏ ମିଳି
ଏବେବି ଓଡ଼ିଆ କୃଷକ
ଦିନେ ଖାଇ ଆଉ ଦିନେ
ପେଟେ ଦେଇ ଓଦାକନା ରହୁଅଛି ଶୋଇ
ନିତିଦିନ ସହର ବଜାରେ
ଦେଖୁ ଆମ୍ଭେ
ଖାଦ୍ୟ ପାଇଁ ଛକା ପଂଝା କେତେ ପୁଣି କଳି
ଲଗୁଅଛି କୁକୁରର ସାଥେ
ଷୋଡ଼ଶୀ ତରୁଣୀ
ଭିକ ମାଗେ ବୁଲି ଘରେ ଘରେ
ଯୌବନ ତା' ଭଙ୍ଗିପଡ଼େ
ଅଭାବର ବିକଟ ଦାଉରେ
କୁହ ତୁମେ ମୌନ କିମ୍ପା
ହେ ଦାସେ ଆପଣେ
ସ୍ୱପ୍ନେ ତୁମେ ପଢ଼ିଥିଲ ଯେଉଁ ଇସ୍ତାହାର
ନାହିଁକି ତହିଁରେ ଆଜି
ଏ ସବୁର କିଛି ସମାଧାନ ?
ଶୂନ୍ୟରୁ ଆସଇ ଭାସି
ଅଶରୀର କାହୁଁ ଏକସ୍ୱର—

କହି ଉଠେ..ଅଛି ଅଛି
ତେବେ କିମ୍ବା ପୀଡ଼ିତ ଦଳିତ ଆମେ
ଏଇ ତୁମ ଦାୟାଦଙ୍କ ହାତେ ?
ବସି ବସ ସବୁକିଛି
ଜାଣୁଛ, ଶୁଣୁଛ..
ଆସ ତୁମେ ସେ ପାରିରୁ
ତୁମ ସିଂହାସନ ଛାଡ଼ି
ତୁମେ ହିଁ କେବଳ ଆଜି
ପାରିବ ଶାସନ କରି
ତୁମ ଦାୟାଦଙ୍କୁ.... ।।

---

# କବି ଗୋପବନ୍ଧୁ

ଶିବ ଦାସ

ହେ କବି ଗୋପବନ୍ଧୁ
ମମତାର ପୂର୍ଣ୍ଣ ଗର୍ଭ
ସନ୍ତରଣ ସର
ସମସ୍ତ ସ୍ନାୟୁରେ ତବ
ବିଭୁପ୍ରୀତି ରମଣୀୟ
ଦାରିଦ୍ର୍ୟ ବିନାଶ କଳ୍ପେ
ମନେ ତବ ସାନ୍ତ୍ୱନାର
ବିବିକ୍ତ ପ୍ଲାବନ ।
ଗତାତୀତ ସଂସ୍କୃତିର
ପୃଷ୍ଠାବଳୀ ଖୋଲି
ଦର୍ଶାଇଛ ମହାଦର୍ଶ—
ଗୌରବର ସୂକ୍ଷ୍ମ ନିଦର୍ଶନ
ସମସ୍ତ ବର୍ତ୍ତମାନର
ବିଶ୍ୱ ପାଇଁ ତୁମେ ଏକ
ବଳିଷ୍ଠ ଭଷଣ....
କାବ୍ୟେ କର୍ମେ ସୁସଂସ୍କାରବାଦୀ
ରକ୍ତ ମାଂସ ପୂଜାରୀ ମହାନ
ତୁମ ପଦେ ତବ ସୃଷ୍ଟି
ଶିଷ୍ୟ ଭବେ ଅର୍ପୁଁ ତାର
ପ୍ରଥମ ପ୍ରଣାମ....

---

# ଆଶୀଷ ତମର

ରାହାସ ରାୟ

ଆଷାଢ଼ ଆସିଛି
ଗୁଆ ତାଳ ନାରିକେଳ ତମାଳ କୁଞ୍ଜରେ
ସେମାନେ ବି ଲୋଡ଼ୁଥିଲେ ଝରଝର ବରଷାକୁ
ମଣିଷଙ୍କୁ ସନ୍ତାପୁଁ ତାରିବା ପାଇଁ
ଯିମିତି ତମେ ଦିନେ ଢାଳୁଥିଲ ଆଖିରୁ ବରଷା

ସମାଜରେ ଗରିବର ସ୍ଥାନ ପାଇଁ
ଅଶେଷ କ୍ଳାନ୍ତିର ପରେ
ସରଗର ପାରିଜାତ ସନ୍ଧାନରେ
ଅକାଳରେ ଗ୍ଲିଗଲ ପରେ
ଗରିବ ବି ଲୋଡ଼ୁଥିଲ ସରଗରୁ ତମରି ଆଶୀଷ ।
ବିଳମ୍ବରେ ହେଲେ ମଧ୍ୟ
ସିଏ ଆଜି ତା' ହାତେ ଲଭିଚି
ଭୂମିହୀନ ପାଏ ଭୂମି
ବେଠି ବେଗାରୀ ଓ ଗୋତି ବନ୍ଧନରୁ
ଗରିବ ଲଭିଚି ମୁକ୍ତି, ମହାମୁକ୍ତି
ସମାଜର ଲହୁଶୋଷା ମହାଜନ
ଦର୍ପ ଦମ୍ଭ ହରାଇ କାନ୍ଦୁଚି
କଳାଧନେ ପୋତାଧନେ ଧନୀ
ସଢ଼ି ମରେ ଗାରଦ ଭିତରେ
ବଢ଼ି ବତାସ କାଳରେ ମଣିଷ ସଙ୍ଖୋଳି ଗ୍ଲେ
ଦୁଃସ୍ଥ ମଣିଷକୁ......
ତମେ ଯାହା ଦିନେ ବାଞ୍ଛିଥିଲ ।

କେତେ ଆଷାଢ଼ ଭିତରେ
ଧାଇଁଥିଲ ଏମାନଙ୍କ ଆଶେ
ଗରିବ ଖାଇବ ଏବଂ ଗରିବ ପିନ୍ଧିବ
ସମାଜ ପିନ୍ଧିବ ନୂଆ ଭେକ
ତମ ମହାପ୍ରୟାଣର ଏତେ ବର୍ଷ ପରେ
ନୂଆ ସୂର୍ଯ୍ୟ ଅଭ୍ୟୁଦୟ ମଣିଷ ଦେଖୁଚି
ନିଜ ଗଢ଼ା ସମାଜ ଭିତରେ ......

---

# ମହାପ୍ରୟାଣର ପଥେ

ବ୍ରଜମୋହନ ମହାନ୍ତି

ମଉଳା ଗୁନ୍ଦ ଝାଉଁଳି ରହିଛି କେଉଁ
ଝାଉଁବଣର ସେ ଗହଣ ଓଢ଼ଣା ତଳେ
ଉଚ୍ଛଳୀୟ ଯେ ବାହୁନି ବାହୁନି ମରେ
ନିର୍ଜନ ଏଇ ଆମ୍ବତୋଟାର ମାଳେ ।

ତୁମେ ଯେବେ ଗଲ ନୀରବେ ଏପରି ମରି
ଲକ୍ଷ ଜନର ନୟନୁ ନିଗାଡ଼ି ଲୁହ
କୁହ କେଉଁପରି ଆମେ ବା ଜୀଇଁବୁ ଏଠି
ତୁମ ପରି ଆମେ ଭାଙ୍ଗି ଛୁଟିବୁ ବ୍ୟୁହ ।

ଆଜି ବି ଦୁଃଖୀ ଦୁଃଖିନୀ ପଣତରେ
ନୟନର ଲୁହ ଆସ୍ତେ ଦେଉଛି ପୋଛି
ଲୁହର ସେ ନୁହେଁ ଲହୁର ଗୋଟିଏ ଛାପ
ଖାଦ୍ୟ ନୁହେଁ ସେ ପାଉଛି ଶସ୍ତା ଲାଠି ।

ତୁମେ କହୁଥିଲ ଦୁଃଖୀ ମୋହର ସଖା
ଦୁଃଖିନୀ ମୋର ନୟନର ଲୁହ ଧାର
ଆଜି କାହିଁ ପାଇଁ ଅନେକ ବର୍ଷ ପରେ
ଶୁଭେ ନାହିଁ ସେହି ମହତ ଉଦାର ଗୀର ?

ଦୁନିଆ ଯେପରି ଓଲଟି ଓଲଟି ଗ୍ଲେ
ତୁମେ ସେହିପରି ଶୀଘ୍ର ଓଲଟି ଗ୍ଲ
ଓଲଟିଲା ନାହିଁ ତୁମର ଖାଲି ଯା' କଥା
ଗରିବର ପାଇଁ ନିତି ଯା' ମିଳାଇଗଲ ।

ତୁମରି ସେହି ସେ ମହା ପ୍ରୟାଣର ପଥେ
ଝପଟି ଯାଉ ଏ ଜାତିର ତୀକ୍ଷ୍ଣ ଡାକ
ଶୁଣିଲ ଯେବେ ହେ ଦେବତା ଓଲଟି ଗ୍ଲହଁ
ଅନ୍ତରେ ଜାଗେ ଅନେକ ବରଷ ଭେକ ।

+ + +

ଆତ୍ମା ମରିନି ଯାଇଛି କେବଳ ଖାଲି
ମାଟି ଦେହ ତାର ମାଟିରେ ସେମିତି ମିଶି
ନେଇପାରେ କିରେ ! ଜାତିର ପିତାରେ ଯମ ?
ମରଣ ଜୟୀ ସେ ଓଡ଼ିଆ ଆକାଶ ଶଶୀ ।

+ + +

ଦେବତା ଯଦି ଗୋ ଜନ୍ମ ଲଭିବ ତୁମେ
ମୂକ ସମାଧିର ପାଷାଣ ପିଣ୍ଡ ସାଥେ
ଢାଳି ଦେବି ମୋର ପ୍ରଣତି ଭରା ଏ ମଥା
ତୁମରି ସେହି ସେ ମହାପ୍ରୟାଣର ପଥେ ।

---

# ଅନଲଭାବତୀ

ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନସିଂହ

( ୧ )

ଶହେଟି ବରଷ ଗଲାଣି ବିତି
ଶହେଟି ଫଗୁଣ ଗଲାଣି ମାତି
ତମେ ଆଜି ଥିଲେ କାଶର ହାସରେ
ବୋହିଥାନ୍ତ ଶତ ଶରତ ଗତି ।

( ୨ )

ବଢ଼ିର ଦେଶ ଏ ଓଡ଼ିଶା ଭୂଇଁ
ମରୁଡ଼ି ଏଇଠି ମାରଇ ହାଇ
ତୋଫାନ ଏଇଠି କିଳିକିଳା ଡାକେ
ବୁଣି ଚଉଦିଗେ ମରଣ ଭୀତି ।

( ୩ )

ସେହି ଭୀତି ସେଇ ନିରଶା ତଳେ
ତମରି ଆଖିରୁ ଲୁହ ଯେ ଝରେ
ମଣିଷ ଜାତିର ସେବାରେ ସେବାରେ
ତମେ ଲେଖିଗଲ ପୀରତି ଗୀତି ।

( ୪ )

ମାଟିର ମାଆକୁ କରିଲ ପୂଜା
ତା' ଦୁଃଖରେ ତମ ମରମ ଭିଜା
ଗାଆଁରେ ସହରେ, ଜଳରେ ବିଲରେ
ସବୁଠି ଦେଖିଲ ସୋଦର ଜ୍ଞାତି ।

( ୫ )

ଏତେ ବଡ଼ ମନ ଦେଖୁନି କାହିଁ
ଏତେ ଏତେ ସ୍ନେହ ମିଳଇ ନାହିଁ
ଦୁନିଆ ଯା'କର ବେଦନା କେଳେଶ
ଠୁଳ କରିଥିଲ ତମରି ଛାତି ।

( ୬ )

ସ୍ୱର୍ଗଜ ସାଧନ ପଥର ଗାଡ଼
ସତରେ ଭରିଲ ତମରି ହାଡ଼
ତା’ରି ଉପରେ ତମ ଦେଶ ଭଲ
ଗଢ଼ିଲେଣି ଏବେ ନବୀନ ଜାତି ।

( ୭ )

ତମରି ସପନ ସୁନାର ଫୁଲ
ଫୁଟି ବିତରଇ ମହକ ମୂଲ
ମଣିଷ ଭିତରେ ମଣିଷଟାଏ ତ
ଆସିଥିଲ ତୁମେ ଏ ମର କ୍ଷିତି ।

( ୮ )

ଶହେ ନୁହେଁ କେତେ ହଜାର ସାଲ
ମିଳିବନି ଜଣେ ତମରି ତୁଲ
ତମରି ନାଆଁକୁ ଜପୁଥିବ ଜାତି
ଗଳାମାଳି କରି ଦିବସ ଗତି ।

( ୯ )

ତୁମେ ଆସିଥିଲ ତୁଉନୀ କରି
ନୀରବରେ ପୁଣି ଗଲ ଯେ ଗ୍ଳଲି
ତମରି ଜୀବନ ଏ ଜାତି କାହାଣୀ
ଅଲିଭବତୀ ସେ ଅଲିଭବତୀ ।

---

# ଆଜି ମୁଁ ଡାକଇ

ପ୍ରାଧ୍ୟାପକ ଜାନକୀବଲ୍ଲଭ ମହାନ୍ତି

ଆଜି ମୁଁ ଡାକଇ ଗୋପବନ୍ଧୁ
ଫେରି ଆସ ତୁମେ ଫେରି ଆସ
ଆଜି ବି ରହିଛି ତୁମ ପଥ ଚାହିଁ
ଏଇ ମାଟି ଆଉ ଏଇ ଦେଶ ।୦।

ସେ ଦିନର ପରି ନଈ ବଢ଼ି ଆଜି
କୂଳ ଭଙ୍ଗେ, ପାଣି ମାଡ଼ି ଚାଲେ
ସେ ଦିନର ପରି ବାଧିକା ପିଲର
ପାଶେ ଆଜି ମାଆ ଲୁହ ଢାଳେ
ଏକା ନାହିଁ ତୁମେ—ଦେଖିବାକୁ ପାଖେ
ଏ ଜାତିର ଯେତେ ଭେକ ଶୋଷ ।୧।

ତୁମ ଜନମର ଶହେ ବରଷର
ପରେ ଆଜି ଲୁହ ଝରେ
ଲୁହ ଝରେ—କୋଟିଏ ନୟନୁଁ
ଲୁହ ଝରି ଝରି ମରେ ।
ଏ ଜାତିର ଜାତକରେ ତୁମ ନାମ ଅଛି ଲେଖା
ଏ ମାଟିର ମୁକୁରରେ ତୁମେ ଦିଅ ନିତି ଦେଖା
ତୁମକୁ ଛାଡ଼ି କି ଲେଖିବାର କେବେ ସମ୍ଭବ
ଏ ଜାତିର, ଏ ମାଟିର
ଏ ଦେଶର ଇତିହାସ ।୨।

---

# ଜାତି ମୁକ୍ତିର ପଥେ

ନରହରି ଉପାଧ୍ୟାୟ

ଅସହଯୋଗର ଜାହ୍ନବୀ ଧାର
ସାର ଉତ୍କଳ ଭୂମେ
ବୁହାଇଥିଲ ହେ ଭଗୀରଥ ସାଜି
ଉତ୍କଳମଣି ତୁମେ ।୧।

ସେହି ଦିନଠାରୁ——

କୋଟି ଜନତାର ହୃଦୟ କେଦାରେ
ବିପ୍ଳବ ବୀଜ ବୁଣି
ବଜ୍ର ନିନାଦେ ଫୁଟାଇଛ ମୂକ–
ମୁଖେ ବିପ୍ଳବ ବାଣୀ ।୨।

କାଠଯୋଡ଼ି ନଈ ବାଲିରେ ସେ ଦିନ
ଜନତାର ସମାବେଶ
ନିବେଦିଲେ ଗୁରୁ ଗମ୍ଭୀର ତାନେ
ସେ ଗୋପବନ୍ଧୁ ଦାଶ ।୩।

ବିଦେଶୀ ଶାସନ ଦୃଢ଼ ଶୃଙ୍ଖଳ
ଛିନ୍ନ କରିବା ପାଇଁ
ସଂଗ୍ରାମ ଭୂମେ ଝାସ ଦେବା ବିନା
ଗତ୍ୟନ୍ତର ଯେ ନାହିଁ ୪।

ହିଂସ୍ର ଶାସକ ପଶୁ ଶକ୍ତିକୁ
ଅହିଂସ ଅସ୍ତ୍ର ବଳେ
ଆଜି ନ ହେଲେ ବି କାଲି ଟାଳି ଦେବା
ନିଶ୍ଚୟ ଅବହେଳେ ।୫।

ସାଗ୍ରହେ ଆମେ ଆଦରିବା ଆମ
ସ୍ୱଦେଶୀ ଦ୍ରବ୍ୟମାନ
ଦୃଢ଼େ ଚଳାଇବା ବିଦେଶୀ ଦ୍ରବ୍ୟ
ବର୍ଜନ ଅଭିଯାନ ।୬।

କାଟି ପିନ୍ଧିବା କୁଟି ଭୁଞ୍ଜିବା
ଜୀବନେ କରିବା ବ୍ରତ
ଆମ ସମ୍ମାନ ବଳି ଦେବା କିଆଁ
ଅପରରେ ପାତି ହାତ ।୭।

କିରଣୀ ଚପ୍ରାସୀ ନୌକରି ଦେଇ
ଯଜ୍ଞ ଛାଗଳ ପରି
ରକ୍ତ ଶୋଷୁଛି ବିଦେଶୀ ଶାସକ
ଯନ୍ତ୍ର ଶୂଳିରେ ଭରି ।୮।

ଜାତି ସଂହତି ଜାତୀୟ ଐକ୍ୟ
କାମ୍ୟ ଆମର ଏବେ
ବଞ୍ଚିବା ଆମେ ଆମ ସଭ୍ୟତା
ସଂସ୍କୃତି ଗଉରବେ ।୯।

ଛାଡ଼ିବା ବିଦେଶୀ ଶିକ୍ଷାୟତନ
କୋର୍ଟ କଚେରୀ ସବୁ
ନିର୍ଲଜ ଘବେ ବୋଲଇବା ନାହିଁ
ସର୍କାରୀ ବଡ଼ ବାବୁ ।୧୦।

ହେ ମୋର ଦେଶର ଯୁବ ସୈନିକ
ଜାତୀୟ କର୍ମ ସ୍ରୋତେ
ଭସାଇ ନିଜକୁ ଅଗ୍ରଣୀ ହୁଅ
ଜାତି ମୁକ୍ତିର ପଥେ ।୧୧।

---

# ଗୋପ-ବଂଶ ପଦ୍ଧତି

ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର

ନିରିଜନ ଅଧଗତି ନୀରବ ଏ ଗୋପବନ୍ଧୁବାଗ
ଘୁମାଉଛି ବସୁମତି ପଉଷର ଦେହ ଥଗ ପାଗ ।

ନଡ଼ିଆ ପତରୁ ଝରେ ଥୋପି ଥୋପି କାକର କଣିକା
ଆକାଶର ଲୁହ ବହି ଓଦା କରେ ପଥର ବେଦିକା ।

ଲୁହାର ପାଚେରୀ ଘେର ବଗିଗ୍ଭର ଝାପ୍‌ସା ଆଲୁଏ
ତୁମେ କି ଦେଖୁଚ ବନ୍ଧୁ ନିଶାକାଳେ କିଏ ସେଠି ଥାଏ ।

ଯା' ଆଖିରେ ଲୁହ ଦେଖି କାନ୍ଦୁଥିଲେ ଆକୁଳେ ଜନତା
ଯା' ଆଖିର ହସ ଥିଲା ଏ ଜାତିର ଆନନ୍ଦ ବାରତା ।

ତାହାରି ଲୁହ ଏ ଝରେ ଅବିରତ ପାଦପ ଶାଖାରୁ
ଭଷା ତା'ର ଶୁଣାଯାଏ ବିଚଳିତ ପତ୍ରର ମର୍‌ମରୁ ।

ଘଡିର କୁହୁଡ଼ି ଜମେ ତା ଉଷୁମ ଦୀର୍ଘ ନିଃଶ୍ୱାସରୁ
ହସେ ସେ ମଳିନ ହସ ଶୀତ ଭୀତ ଜହ୍ନ ଆଲୁଅରୁ ।

ଦିନେ ଯିଏ ଡାକୁଥିଲା ଏ ଜାତିର ଅନ୍ଧାର ବେଳାରେ
ଆଜି ବି ଇସାରା ଦିଏ ଜଡ଼କାରୀ ଶୀତ ନିଶାକାଳେ ।

କାନ ପାରି ଶୁଣ ବନ୍ଧୁ କହୁଚି ସେ ନୀରବରେ କଥା
''ଖୋଲି ଦିଅ ରୁଦ୍ଧ ଦ୍ୱାର ଗ୍ଭଲିଯିବ ଅନ୍ଧାର ଜଡ଼ତା ।

କାଲି ପ୍ରଭାତରେ ଯେବେ ଉଦେ ହେବ ନବ ଅରୁଣିମା
ଉଷୁମ କିରଣ ଜାଳେ ପରିଶବ ତନୁ ମନ ସୀମା

ଜାତିର ପରାଣ ତଳେ ମିଶିଥିବି ଜନତା ସାଗରେ·
ସମାଜର କବି ମୁହିଁ ବସଥିବି 'ସମାଜ' ଆଗରେ ।

---

# ଧନ୍ୟ ଗୋପବନ୍ଧୁ

ଶ୍ରୀମତୀ ହରପ୍ରିୟା ଦେବୀ

ହେ ପୁଣ୍ୟାତ୍ମା ଗୋପବନ୍ଧୁ, ତ୍ୟାଗ ପ୍ରତିମୂର୍ତ୍ତି
ଦୁଃଖିନୀ ଉତ୍କଳମାତା ନୟନ ସମ୍ପତ୍ତି
ସତ୍ୟ ଧର୍ମ ଅହିଂସାର ବିମଳ ପ୍ରତିଭା
ଦେଶ ପାଇଁ ଜାତି ପାଇଁ ନ କରିଛ କିବା ?

ବର୍ଦ୍ଧି ମରୁଡ଼ି ଦୁର୍ଭିକ୍ଷ ମହାମାରୀ ଯହିଁ
ବୁଭୁକ୍ଷୁର ଆର୍ତ୍ତନାଦେ ପ୍ରକମ୍ପିତ ଭୂଇଁ ।
ତହିଁ କରିଗଲ ତବ ମହାନ କର୍ତ୍ତବ୍ୟ
ନ ଗ୍ରହିଁଲ ପ୍ରତିଷ୍ଠା ବା ଧନ ଗଉରବ ।

ଦୁଃଖୀ ଜନ ଆଖି ଲୁହ ପୋଛି ଦେଇ କରେ
ଧୂଳିଧୂସରିତ ହୋଇ ଲେଟିଲ ଧରାରେ
ଚରିତ୍ରର ନିଷ୍ଠା ତବ ସୁଦୃଢ଼ ବ୍ୟକ୍ତିତ୍ୱ
ଢାଳିଲ ଏ ଦେଶ ପ୍ରାଣେ ମମତା ଅମୃତ ।

ଧର୍ମବୀର କର୍ମବୀର ତ୍ୟାଗ ମହାସିନ୍ଧୁ
ଏ ଦେଶ ନମଇଁ ପଦେ ଧନ୍ୟ ଗୋପବନ୍ଧୁ ।

---

# ବୀରର ଜାତକ

ମନମୋହନ ମିଶ୍ର

ସେମାନେ ଭବନ୍ତୁ ଯାହା ଭବିବାର କି ଆସେ ଯାଏ ?
ଜାତି ଇତିହାସ ଆଇନ୍ କି କରେ ତା' ପରବାଏ ?
ସେମାନେ ଭବନ୍ତି—
ତୁମେ ବ୍ରୋଞ୍ଜ ଅବା ପାଷାଣ ମୂରତି ଚିତ୍ରପଟ
ଉଠାଣି ଗଢ଼ନ୍ତି ଚଉତରା ମଝି ସଡ଼କ ଛକିର ଦୁଆରପାଳ
ଗର୍ଭବୀ ତଟ ସୁଆଣ୍ଡ ଗାଁରେ ନେତ୍ରୋତ୍ସବର ପୂର୍ଣ୍ଣଘଟ
ଦର୍ଶନୀ ପୀଢ଼ ଅଲୁଗୁଣି ତୁମେ ଝୁଲାଇବା ଲାଗି ଗଜଗମାଳ
ବାଜିପାଲିଆର ଦାମିକା ବାଜି
କ୍ଷମତା ରଥର ହୁଙ୍କାର ଶେଳେ ମଉନ ସାକ୍ଷୀ
ଦୁର୍ନୀତି ରାଜା ଅଦାଲତ ଘର ବେକାର କାଜି
ଶ୍ୱେର ଯହିଁ ଧାଏଁ "ଶ୍ୱେର" "ଶ୍ୱେର" ବୋଲି ପରକୁ ଡାକି
ସେମାନେ ଭବନ୍ତୁ ଯାହା ଭବିବାର କି ଯାଏ ଆସେ ?
ସେମାନେ ଭବିଲେ କମଳ ଫୁଟେ କି ଶ୍ରାବଣ ମାସେ ?
ଗୋଟିଏ ଯେଉଁଠି ବହୁ ଭାଗ୍ୟଶାଳୀ କୋଟିକି ମାରି
ଆପଣା ପାତକ ଘୋଡ଼ାଇବା ଲାଗି ଦୁନିଆ ଜାଲି
ତାହାର ଯେତକ ସେବାକାରୀ ଦାସ ଡାହୁକ ଦଳ
ପିଆଜ ଗଛରେ ତାଙ୍କରି ଇଛାରେ ଫୁଟିଛି କି କାହିଁ ଗୋଲାପ ଫୁଲ ?
ଇତିହାସ ଯା'ର ମଥାରେ ଲେଖିଛି ମୃତ୍ୟୁ ରାୟ
ତାର ଭବନାରେ କୋଟି ଜନତାର କି ପରବାୟ ?

ଏହି ଜାତି ଜାଣେ ତୁମେ ତ ଜୀବନ୍ତ ମଣିଷ ଥିଲ
ମଣିଷର ପରି ମଣିଷ ଥିଲ
କୋଟି କୁଟୀରର କ୍ରନ୍ଦନ ନୀରେ ଆପଣା ନୟନ ପଖାଳି ଥିଲ ।
ତୁମେ ତ ନଥିଲ ରୂପ ମହଲର ରାଜକୁମାର !
କଷଣ ତାପରେ ସିଝି ସିଝି ହେଲ ମୁଗୁନି କଳା
ପାଦେ ପାଦେ ଗଲି କଣ୍ଟକ ପଥେ ନ ମାନି ବାଧା ।
ଜୀବନର ଯେତେ ମରୁଡ଼ି ବନ୍ୟା ଭଉଁରୀ ଖେଳା
ହର୍ଷ ବିଷାଦ ସନ୍ତାପ ସୁଖ କୁଟୀଳ ସାଧା

ଜୟ ପରାଜୟ ଆଶା ନିରାଶାର ଅଥଳ ଦୋଳା
ବୁଡ଼ି ବୁଡ଼ି ହେଲ କୋଟି ଜନତାର ଜୀବନ ଭେଳା
ସମୂହ ମୁକ୍ତି ସନ୍ଧାନ ପଥ
ଛେକିଲା ବିଦେଶୀ ଅତ୍ୟାଗ୍ର
ବନ୍ଦୀର ଆତ୍ମ କାହାଣୀ ହୋଇଲା
ମୁକତି ମନ୍ତ୍ର ବେଦର ଗାର....
ତୁମେ ତ ନ ଥିଲ ରୂପ କାହାଣୀର ରାଜକୁମାର

ବଦଳୁଛି ଏହି ସମାଜ ଶାସନ ଜୀବନ ରୀତି
ସାଗର ମୁଖିନୀ ନଦନଦୀ ହେବେ
ଫସଲ ପାଳିକା ପୀୟୂଷ ଧାର
ଅନ୍ଧାର ରାତି ମଉଳି ଯିବ
କୋଟି ଆଖି ଲୁହ ପାଲଟିବ ଶତ
ନବ ପ୍ରଭାତର ଶିଶିର ଝର
କୋଟି ମିହନ୍ତୀର କୋଟି କୋଟି ବାହୁ
କୋଟି ମଗଜର କର୍ମ ଗୀତି
ମଣିଷ ହୋଇବ ଆଗତ ପିଢ଼ିରେ ବାର୍ତ୍ତାବହ
''ଦେଶବାସୀ ବନ୍ଧୁ ଆତ୍ମୀୟ ସୋଦରେ''
ମଣିଷ ଜୀବନେ ସତ୍ୟ ହେବ
ପୀଡ଼ିତର ସେହି ସ୍ୱରାଜ୍ୟ ସାଧନ
ମଣିଷର ହେବ ଚରମନୀତି
କୋଟି ଦେବକୀର ଜଠରୁ ଖସିବେ
କୋଟିଏ କୃଷ୍ଣ ବାଳଗୋପାଳ
ପ୍ରତିଟି ଲଲାଟେ ଅଙ୍କିତ ହେବ
ତୁମରି ଦୀକ୍ଷା ଆଜ୍ଞା ମାଳ
ଶେଷ ହେବ ତେବେ କଂସ ରାଜୁତି ଗୋଲାମି କାଳ

ମଣିଷର ପରି ମଣିଷ ହେବ
ଶତ ପୁରପଲ୍ଲୀ ଜନପଦେ ହେବ
ଶ୍ରମିକ ବୀରର ଜାତକ ଲେଖା
ପ୍ରତି ପଦ ପାତେ ଦ୍ୟଉ ଦାଉ ହେବ
ଅଗ୍ରଜ ତୁମ ଚରଣ ରେଖା

ଜନମ ମରଣ ଦୁଇଟି ତାରିଖ
ସଂସାର ରଖିଛି ମଣିଷ ପାଇଁ
ଶୁଣିଛୁ ସୂର୍ଯ୍ୟ ଗ୍ରହ ତାରକାର
ମୃତ୍ୟୁ ତାରିଖ ରହିଛି କାହିଁ ?
ଜନ୍ମ ତାରିଖ ଠିକଣା ନାହିଁ !
ତୁମେ କିନ୍ତୁ ଯେଣୁ ମଣିଷ ଥିଲ
ମଣିଷର ପରି ମଣିଷ ଥିଲ
ଜନ୍ମ ତାରିଖ ନିଶ୍ଚୟ ଅଛି
ବୀରର ଜାତକେ ତାରିଖ ସିଏ
ମାତ୍ରକ ମୃତ୍ୟୁ ତାରିଖ ନାହିଁ ।

# ସେ ଦୁଇଟି ଆଖି

ଶ୍ରୀମତୀ ପ୍ରଭବ୍ ଶତପଥୀ

ସମ୍ବାଦପତ୍ରର ସାମ୍ନା ପୃଷ୍ଠାରେ ଫଟୋ
ନଈକୂଳ ବୁଦାରେ ଲଟକିଥିବା
ଚାରି ପାଞ୍ଚ ବର୍ଷ ଝିଅଟିର
ପଚା ମାଛ ପରି ଶବ
ଖଣ୍ଡେ ଛିଟ ଜାମା ଆଉ
ରବର କାଚର ଚିପା ଦାଗ ।
କଳାହାଣ୍ଡି ମରୁଡ଼ିରେ
ଅନାହାର ପୀଡ଼ିତ ଶିଶୁର
ଗୋଡ଼, ହାତ ଫୁଲି ଫୁଲି
ଭୟାତୁର ଆଖିର କୋରଡ଼ ।
ଦିନ ଦିନ ଧରି ଏଇ ଛବି
ରେଡ଼ିଓର ସ୍ୱର
ବୁଡ଼ିଲା ବାରଟି ଗାଆଁ
ପାଞ୍ଚ ଫୁଟ୍ ବଢ଼ି ପାଣି ଘେର ।
ଆମେ ସବୁ ଦୁଃଖ କରୁ
ସମବେଦନାରେ ହୁଏତ ଅସ୍ଥିର ହେଉ
କିନ୍ତୁ ତା' ଦୁଇଟି ଆକ୍ଷି
ଟଳମଳ ଦରଦରେ
ତା'ର ଅସ୍ଥିରତା
ପରିଣତ ନିଷ୍ଠା, ଦୃଢ଼ତାରେ
ଚିନ୍ତା, ସମ୍ବେଦନା ତା'ର
ବହି ଆସେ
କରୁଣାର ସହସ୍ର ଧାରରେ
ସମ୍ମୋହିତ ହାତ ଲମ୍ବିଯାଏ
ପାଦ ଦୁଇ ଦ୍ରୁତ ପଥେ ପଡ଼େ ।
ଛିଣ୍ଡା କଖାରୁ ଲଟାପାଖରେ
ଲେପ୍‌ଟେଇ ଥିବା ଚାଳ
ସନ୍ତସନ୍ତିଆ ଭୂଇଁରେ
ନଇଁ ପଡ଼େ ସିଏ, ଆନ୍ତରିକତାରେ ।

ଢୁ ଢୁ ବର୍ଷା ରାତି, ଶୋଇଲା ଶେଯରେ
ଝର ଝର ଲୁହ
ଗଛମୂଳେ, ନଈ ବନ୍ଧପରେ
ସର୍ ସର୍ ଗ୍ଲି ଯାଉଥି ା ସାପଙ୍କ ମେଳରେ
ପାଣି ବୁଡ଼ୁବୁଡ଼୍, କାତର ମଣିଷ ପାଇଁ
ଫାଟିପଡ଼େ ବେଦନାର୍ତ୍ତ ମୁହଁ ।
ତୁମେ ଦେଖି ଥାଇପାର
ଶିରିପର ଛକପାଖେ ତା'ର
ଉବଲେଶହୀନ ଆଖି ପଥରର ଦେହ
କେହି କେବ ତା' ଆଡ଼େ ଗ୍ରହଁ ?
ଆକାଶର ଥାକ ଥାକ ମେଘଲଦା ଭରି ମୁହଁ
ବର୍ଷାଭିଜା ସହରର ବଣ, ଧାନକ୍ଷେତ
ଉଠାଣି ଗଡ଼ାଣି ରାସ୍ତାଗୁଡ଼ିକର
କଳା ନାଲି ଗାର ଅଙ୍କା,
ଶାଗୁଆ ମାନଚିତ୍ର,
ଗହଗହ ମଣିଷର ସୁଅ
ଥରଟିଏ ମାତ୍ର ତାକୁ ଗ୍ରହଁ !
ସେ କେମିତି ଭିନ୍ନ ଦିଶେ ଆମଠାରୁ
ତା ପାଖରେ ଏକାକାର କାମ ଆଉ କଥା,
ମୂର୍ତ୍ତିମାନ ସଫଳ କବିତା,
ଦୁର୍ଭିକ୍ଷ ଓ ରଥଯାତ୍ରା ମହାମାରୀ
ମୃତ୍ୟୁକୁ କରୁଣା କରି
ଗ୍ଲିଥାଏ ବାଟ ଅସୁମାରି ।
ବାଟ ତା'ର ଏବେ ବି ଉନ୍ମୁକ୍ତ
ଅମଡ଼ା ଓ ନିଛାଟିଆ
କେହି ଜଣେ ପକାଏ ନା ପାଦ ।
ସେ ଆଖି ଦୁଇଟି ଅତି ଚିହ୍ନା ଜଣା ।
ଆଜିଠାରୁ ଶହେ ବର୍ଷ ତଳେ
ଅବହେଳିତା, ସୁନ୍ଦରୀ ଓଡ଼ିଶା ମାଆର କୋଳେ
ଜନ୍ମିଥିଲା ସିଏ
କିମ୍ବଦନ୍ତୀର ମଣିଷ ନୁହେଁ;
ଏ ମାଟିର ମୂର୍ତ୍ତିମନ୍ତ, ଉଷ୍ମ ସମ୍ବେଦନା ।

# ଗୋପବନ୍ଧୁ ନୁହେଁ, ଦୀନବନ୍ଧୁ

କବିଚନ୍ଦ୍ର ଡକ୍ଟର କାଳୀଚରଣ ପଟ୍ଟନାୟକ

ଶପଥ କରି ମୁଁ କହିବି ତାଙ୍କର ନାଆଁ ନୁହେଁ ଗୋପବନ୍ଧୁ
ସୁଆଣ୍ଡୋ ଗାଆଁରେ ଜନମିଥିଲେ ଯେ ଅଟନ୍ତି ସେ ଦୀନବନ୍ଧୁ ।୧।

ଓଡ଼ିଶା ଆମର ଗରିବ ଘଇଜ ବର୍ଦ୍ଧି ମରୁଡ଼ିର ଠାଇଁ
ଜଗନ୍ନାଥ ବରେ ଜନମିଲେ ସିଏ ଦୁଃଖ ହରିବାର ପାଇଁ ।୨।

ଦୀନ ଜନତାର ଦୁଃଖ ଦେଖି ତାଙ୍କ ଆଖି ଲୁହ ଛଳ ଛଳ
ଦୁନିଆ କଥାରେ ଆପଣାର ଯାହା କରିଥିଲେ ସବୁ ପର ।୩।

ବର୍ଦ୍ଧି ନଈ ତୋଡ଼ ନ ମାନି କାଠୁଆ ମେଲି ପାଣିର ସୁଅରେ
ମାଗି ଯାଚି ଚୂଡ଼ା ଗୁଡ଼ଲ ନେଇ ସେ ବାଣ୍ଟୁଥିଲେ ଭେକିଲରେ ।୪।

କି ଛାତି ସତେ ସେ କଳପି ନ ହୁଏ ଗଢ଼ା ସେ ଲୁହା ପଥରେ
ଅଧିର ନୋହିଲ ଜାଣୁ ଜାଣୁ ପୁଅ ମରି ପଡ଼ିଅଛି ଘରେ ।୫।

କହିଲେ ଗୋଟିକ ବଦଳେ କୋଟିଏ ପୁଅ ଅଛନ୍ତି ତାଙ୍କର
ଜନତାର ଦୁଃଖ ଭଳି ତତ୍‌କ୍ଷଣ ଘରୁ ହୋଇଲେ ବାହାର ।୬।

ଦେବ କି ମାନବ କିସ ଥିଲେ ସେ ତ କଳି ନ ପାରିବ କେହି
ବିଶ୍ୱରେ ରକତ ମାଉଁସରେ ସତେ ଗଢ଼ା ନୁହେଁ ତାଙ୍କ ଦେହି ।୭।

ଗୁହିଁଥିଲ ଯିଏ ଦେଶବାସୀ ଗ୍ଲି ଯିବାକୁ ପିଠିରେ ତାର
ଦେଶର ମାଟିରେ ଦୁର୍ଲଭ ଶରୀର ମିଶିବାକୁ ଆଶା ଯା'ର ।୮।

ଏ ଦେଶ ସ୍ୱରାଜ୍ୟ ପଥରେ ଯେତେକ ରହିଛି, ଖାଲ ଖମଣା
ପୂରି ଯାଉ ସବୁ ଆପଣା ହାଡ଼ରେ ବୋଲି ଯା'ର କଳପଣା ।୯।

ନର ଦେବତା କି ନୁହଁଇ ସେ କହ ଧୀର ଚିତ୍ତରେ ବିଗ୍ଚରି
ଗୋପବନ୍ଧୁ ବୋଲି ଡାକ ସିନା ଦୀନବନ୍ଧୁ ସେ ନୁହେଁ କିପରି ? ।୧୦।

ଶିକ୍ଷାରେ ଦୀକ୍ଷାରେ ଏ ସାନ୍ ଦେଶରେ ବତୀ ଜାଳିଗଲା ଯିଏ
ଜଗନ୍ନାଥ ବରେ ନୁହେଁ କି ଏ ଦେଶ ଜାତିର ଅଭୁଲା ସିଏ ।୧୧।

ବାପା ମାଆ ସିନା ସରଧାରେ ଦେଇଥିଲେ ଗୋପବନ୍ଧୁ ନାଆଁ
ଦୀନ ଦରିଦ୍ରର ବନ୍ଧୁ ହେବ ବୋଲି ଜାଣି ତ ନ ଥିଲେ ତାହା ।୧୨।

ପରଦୁଃଖ ଧୋଇବାକୁ ଲୁହ ଧାରେ ଭରା ଥିଲା ଆଖି ଯା'ର
ଝୁରି ହେଲେ ଯେତେ ଆଉ କି ମିଳିବ ଶୁଭ ଦରଶନ ତା'ର ।୧୩।

ଭେଟିଛି, ମିଶିଛି ସଙ୍ଗେ କେତେ ଥର କେତେ ସଉଭାଗ୍ୟ ମୋର
ସରଗ ଦେବତା ଆହେ ଦୀନବନ୍ଧୁ ଚରଣେ ଘେନ ଜୁହାର । ୧୪।

---

# ହେ ଯାଜ୍ଞିକ

ଅଧ୍ୟାପକ ଚନ୍ଦ୍ରମଣି ବେହେରା

ତୁମେ ଗୋପବନ୍ଧୁ
ବୁଝିଥିଲ ଏ ମାଟିର ପ୍ରାଣ
(ନୁହେ ତାହା କାଳ୍ପନିକ ତନ୍ଦ୍ରାତୁର ଅଳସ ଆଘ୍ରାଣ)
ତୁମେ ଚିକିତ୍ସକ
କଳ୍ପନାର ପାରାବାର କୂଳେ
ଭାଙ୍ଗିନାହିଁ ସ୍ୱପ୍ନର ଲହଡ଼ି
ତୁମେ— ତୁମେ ଏକା ଧରିଥିଲ
ଏ ଜାତିର ମୃତକଳ୍ପ ନାଡ଼ୀ ।

ହେ ଦ୍ରଷ୍ଟା ତୁମେ ଦେଖିଥିଲ
ବସନ୍ତର ଆଗେ ଏଇ ଜାତି
ନିଦାଘରେ ଜଣାଏ ସ୍ୱାଗତ
ରୋଗଶୀର୍ଣ୍ଣ, ପୀଡ଼ାଗ୍ରସ୍ତ ପ୍ରାଣ
ସ୍ନାୟବିକ ଶତ ପର୍ବ କ୍ଷତ
ସମାଜର ଆଭିଜାତ୍ୟ ତଳେ ଅପରାଧ ଯେତେକ ବିକାର
ତାଆରି ଆରୋଗ୍ୟ ପାଇଁ ଲୋଡ଼ିଥିଲ ତୁମେ ପ୍ରତିକାର
ହେ ଯାଜ୍ଞିକ,
ଏ ଜାତିର ଯଜ୍ଞପୀଠେ ପଳ ପଳ ଦେଇ ରକ୍ତାହୂତି
ଦଧୀଚିର ପରି ଶେଷେ ତୁମେ ଦେଇଗଲ
ଏ ମାଟିର ଅସ୍ଥି
କିନ୍ତୁ ଆମେ ତୁମର ଅଯୋଗ୍ୟ ବଂଶଧର
ଆମ ମନରେ ଯେତେକ ଅମାନୁଷିକ
ଆଦିମ ପଶୁର ବିକାର
ଆମେ ବୀର୍ଯ୍ୟହୀନ, ପ୍ରାଣ ଆମର କୀଟ ଦଂଷ୍ଟ
ଜୀବନର ଯାହା କିଛି ଶୁଭ ଏକକ ଓ ଆଗ୍ନେୟ
ସମାଜରେ ଆଜି ଅସ୍ପୃଶ୍ୟ, ପତିତ ଓ ଭ୍ରଷ୍ଟ
ତେଣୁ, ତୁମର ଅସ୍ଥିରେଂ ତିଆରି ହୋଇନି ବଜ୍ର
ଆମେ ନେଇନୁ ତୁମ ତ୍ୟାଗ ମନ୍ତ୍ରର ଦୀକ୍ଷା
ମୃତ୍ୟୁର ବୀକ୍ଷଣାଗାରରେ ଆଜି ତେଣୁ ଗ୍ଲାନିଛି
ଆଭିଜାତ୍ୟ ଓ ଚକ୍ରାନ୍ତର

ସ୍ଥିତି ପାଇଁ ନିସ୍ପନ୍ଦ ଓ ନିର୍ଜୀବ ପରୀକ୍ଷା....
"ତ୍ୟାଗଇ ଜୀବନ"—ଏଇ ଥିଲା ତୁମ ପଥର ବାଣୀ
କର୍ମମୁଖର ରାଜପଥରେ ଏଇ ଥିଲା ତୁମର ସାଧନା,
ସମ୍ଭୋଗ ଶୋଷଣ ବା ଆଭିଜାତ୍ୟର
ଯେତେକ କୂଟନୈତିକ ଛଳନା
ତା'ଠୁଁ ତୁମେ ଥିଲ ଦୂରରେ,
ତେଣୁ ଏଇ ଧୂଳି ମାଟିର ପୁରରେ
ତୁମେ ପାଇଥିଲ ଅମୃତର ପରିଚୟ—ଜୀବନର ମାର୍ଗ
ତୁମେ ବୁଝିଥିଲ ତ୍ୟାଗର ସଞ୍ଜୀବନୀ ବିନା
ଆରୋଗ୍ୟ ହେବନି ଏ ଜାତିର ପକ୍ଷାଘାତ କ୍ଷୟ ।
କିନ୍ତୁ, ଆଜ ବି ଆରୋଗ୍ୟ ହୋଇନି ଆମ
ଆଭିଜାତ୍ୟର ଶୋଥ
ସମାଜର ଶରୀରରେ ଯେତେ କିଛି ଅଶ୍ଳୀଳ ଓ ଗୋପନୀୟ କ୍ଷତ
ନିଅନ୍ତି ଆଶ୍ରୟ,
ବଣିକର ମାନଦଣ୍ଡ ଆଜି ବି ମାପେ ଆମର ସଭ୍ୟତା
ଲମ୍ପଟ୍ୟକୁ ଦେଉ ଆମେ ସଦୟ ପ୍ରଶ୍ରୟ ।
ମଣିଷର ଧର୍ମ ନାମେ ଚାଲେ ଆଜି ଖାଲି ବର୍ବରତା
ଜୀବନର ମୁକ୍ତି କାହିଁ ? ମୃତ୍ୟୁ ମୁଖେ ଚାଲେ ମାନବତା
ମଣିଷର ଚିନ୍ତାଧାରା ଆଜି ରୁଗ୍ଣ
ତା'ର ରକ୍ତହୀନ କାମଳ ବିବର୍ଣ୍ଣ
ଚକ୍ଷୁ ତଳେ ମୃତ୍ୟୁର ଇସାରା
ମୁକ୍ତି କାହିଁ, ମୁକ୍ତି କାହିଁ, ବୁରିପଡ଼େ ଆଜି ବିଶ୍ୱସାରା ।
ପ୍ରତିଭା ଆଜି ବଣିକର କ୍ରୀତଦାସ
ହେ ଗୋପବନ୍ଧୁ, ସଇତାନର ଏଇ ଆଧିପତ୍ୟ ଦେଖି
ତୁମ ଆତ୍ମା ଲଭୁଚି ତ ସ୍ୱର୍ଗରେ ଆଶ୍ୱାସ ?
ଆଜି ତୁମ ପରି ପୁଣ୍ୟାତ୍ମାର ପ୍ରୟୋଜନ
ପ୍ରୟୋଜନ ତୁମର ଶୁଭ୍ର ଆଦର୍ଶ, ନିଷ୍ପାପ
ଓ ନିଷ୍କଳଙ୍କ ଜୀବନ
ମୁଁ ଚାହେଁ ତୁମର ଏଇ ଶତବାର୍ଷିକୀ ଆଜି ଚେତେଇ
ଦେଉ ଆମ ପ୍ରାଣରେ
ତୁମ ରକ୍ତର ପରମ୍ପରା ତୁମର ବୀଜମନ୍ତ୍ର ବାଣୀ
"ତ୍ୟାଗରେଇ ଅଛି ଜୀବନ, ଭୋଗେ ଖାଲି ମୃତ୍ୟୁର ଉଜାଣି ।"

---